# ଶ୍ରୀଶ୍ରୀଜଗନ୍ନାଥ ଭଜନ ସାର ସଂଗ୍ରହ

ରଥଯାତ୍ରା (୧୯୯୪) ଉପଲକ୍ଷେ ପ୍ରକାଶିତ

ନମୋ ନୀଳାଚଳୋତ୍ସଙ୍ଗବାସିନେ ତତ୍ପଳାଭୃତେ

ନୀଳାଦ୍ରିନିରଦୋପାୟ, ଚତୁର୍ବର୍ଗାମ୍ବୁବର୍ଷିଣେ ।।

ସୂଚନା ଓ ଲୋକ ସଂପର୍କ ବିଭାଗ, ଓଡିଶା ସରକାର

ପ୍ରଯୋଜନା - ସୁବାସ ପାଣି, ସୁରସେନ ଜେନା
ସମ୍ପାଦନା - ପଣ୍ଡିତ ନୀଳମଣି ମିଶ୍ର, ରାଜକିଶୋର ମିଶ୍ର
ଅଲଂକରଣ - ଦୀନନାଥ ପାଠୀ, ବଳଦେବ ମହାରଥୀ
ଟାଇପ୍‌ସେଟିଙ୍ଗ - ମଲ୍‌ଟିମିଡ଼ିଆ ୟୁନିଟ୍, ଓଡ଼ିଶା କମ୍ପ୍ୟୁଟର ପ୍ରୟୋଗ କେନ୍ଦ୍ର, ଭୁବନେଶ୍ୱର

ମୂଲ୍ୟ ୧୫ ଟଙ୍କା

Digitized by PPRACHIN, SOA



# ଶ୍ରୀଜଗନ୍ନାଥ ପଞ୍ଚକମ୍

ରକ୍ତାମ୍ଭୋରୁହଦର୍ପଭଞ୍ଜନ ମହାସୌନ୍ଦର୍ଯ୍ୟ ନେତ୍ରଦ୍ୱୟଂ
ମୁକ୍ତାହାରବିଲମ୍ବିହେମମୁକୁଟଂ ରତ୍ନୋଜ୍ଜ୍ୱଳତ୍କୁଣ୍ଡଳମ୍ ।
ବର୍ଷାମେଘସମାନନୀଳବପୁଷଂ ଗ୍ରୈବେୟହାରାନ୍ୱିତଂ
ପାର୍ଶ୍ୱେ ଚକ୍ରଧରଂ ପ୍ରସନ୍ନବଦନଂ ନୀଳାଦ୍ରିନାଥଂ ଭଜେ ।୧।

ଫୁଲ୍ଲେନ୍ଦୀବରଲୋଚନଂ ନବଘନଶ୍ୟାମାଭିରାମାକୃତିଂ
ବିଶ୍ୱେଶଂ କମଳାବିଳାସବିଳସତ୍ପାଦାରବିନ୍ଦଦ୍ୱୟମ୍ ।
ଦୈତ୍ୟାରିଂ ସକଳେନ୍ଦୁମଣ୍ଡିତମୁଖଂ ଚକ୍ରାବ୍ଜହସ୍ତଦ୍ୱୟଂ
ବନ୍ଦେ ଶ୍ରୀପୁରୁଷୋତ୍ତମଂ ପ୍ରତିଦିନଂ ଲକ୍ଷ୍ମୀନିବାସାଳୟମ୍ ।୨।

ଉଦ୍ୟନ୍ନୀରଦନୀଳସୁନ୍ଦରତନୁଂ ପୂର୍ଣ୍ଣେନ୍ଦୁବିମ୍ବାନନଂ
ରାଜୀବୋତ୍ପଳପତ୍ରନେତ୍ରଯୁଗଳଂ କାରୁଣ୍ୟବାରାନିଧିମ୍ ।
ଭକ୍ତାନାଂ ସକଳାର୍ତ୍ତିନାଶନକରଂ ଚିନ୍ତାର୍ଥିଚିନ୍ତାମଣିଂ
ବନ୍ଦେ ଶ୍ରୀପୁରୁଷୋତ୍ତମଂ ପ୍ରତିଦିନଂ ନୀଳାଦ୍ରିଚୂଡାମଣିମ୍ ।୩।

ନୀଳାଦ୍ରୌ ଶଙ୍ଖମଧ୍ୟେ ଶତଦଳକମଳେ ରତ୍ନସିଂହାସନସ୍ଥଂ
ସର୍ବାଳଙ୍କାରଯୁକ୍ତଂ ନବଘନରୁଚିରଂ ସଂଯୁତଂ ଚାଗ୍ରଜେନ ।
ଭଦ୍ରାୟା ବାମଭାଗେ ରଥଚରଣଯୁତଂ ବ୍ରହ୍ମରୁଦ୍ରେନ୍ଦ୍ରବନ୍ଦ୍ୟ
ବେଦାନାଂ ସାରମୀଶଂ ସୁଜନପରିବୃତଂ ବ୍ରହ୍ମଦାରୁଂ ସ୍ମରାମି ।୪।

ଦୋର୍ଭ୍ୟାଂ ଶୋଭିତଲାଙ୍ଗଳଂ ସମୁଷଳଂ କାଦମ୍ବରୀଚଞ୍ଚଳଂ
ରତ୍ନାଢ୍ୟ ବରକୁଣ୍ଡଳଂ ଭୁଜବଳୈରାକ୍ରାନ୍ତଭୂମଣ୍ଡଳମ୍ ।
ବଜ୍ରାଭାମଳଚାରୁଗଣ୍ଡଯୁଗଳଂ ନାଗେନ୍ଦ୍ରଚୂଡୋଜ୍ଜ୍ୱଳଂ
ସଂଗ୍ରାମେ ଚପଳଂ ଶଶାଙ୍କଧବଳଂ ଶ୍ରୀକାମପାଳଂ ଭଜେ ।୫।



Digitized by PPRACHIN, SOA

# ଭୂମିକା

ଓଡିଆସାହିତ୍ୟର ବିଭିନ୍ନ ବିଭାଗ ମଧ୍ୟରେ ଗୀତିକାବ୍ୟର ସ୍ୱତନ୍ତ୍ରଭୂମିକା ରହିଛି, ଗୀତିକାବ୍ୟର ପରିସର ମଧ୍ୟରେ କୋଇଲି, ଚଉପଦୀ, ଚଉତିଶା, ପୋଇ, ବୋଲି, ପଦୀ,ପଦିଆ, ଷୋଡଶା, ପାଲା ଓ ଭଜନ ଆଦି ଜନସାଧାରଣଙ୍କ ମନୋରଞ୍ଜନର ସାଧନ ରୂପେ ବ୍ୟବହୃତ । ଏଥି ମଧ୍ୟରେ 'ଭଜନ' ଭୂମିକା କେବଳ ଭକ୍ତ ଓ ଭଗବାନଙ୍କ ମଧ୍ୟରେ ସୀମିତ । ଏହି ଭଜନର ପ୍ରବୃତ୍ତି ଋଗ୍‌ବେଦ ଯୁଗରୁ ଆରମ୍ଭ ହୋଇଥିଲା । ବୈଦିକ ଋଷି ମହର୍ଷି ପ୍ରକୃତିର ବିଭିନ୍ନ ଉପାଦାନଠାରୁ ଉପକୃତ ହେବା ସଙ୍ଗେ ସଙ୍ଗେ ସେମାନଙ୍କ ଗୁଣାବଳୀ ବର୍ଣ୍ଣନା କରି 'ସୂକ୍ତ'ମାନ ନିର୍ମାଣ କଲେ । ସେହି ସୂକ୍ତ ଗୁଡିକ ହେଉଛି-ଭାରତୀୟ ଭଜନ ସାହିତ୍ୟର ମୂଳଉତ୍ସ ।

ପୁରାଣ ଯୁଗରେ ବିଭିନ୍ନ ଦେବଦେବୀଙ୍କ ଉଦ୍ଦେଶ୍ୟରେ ସ୍ତୋତ୍ର, କବଚ, ଶତନାମ, ସହସ୍ରନାମ ପ୍ରଭୃତିର ପ୍ରଚଳନ ହୋଇଥିଲା । ଯଜମାନଙ୍କର ମଙ୍ଗଳ କାମନା କରି, ପୁରୋହିତମାନେ ବିଷ୍ଣୁ, ଶିବ, ଦୁର୍ଗା, ଲକ୍ଷ୍ମୀ, କାଳୀ, ଗଣେଶ, ଓ ସରସ୍ୱତୀଙ୍କ ଉଦ୍ଦେଶ୍ୟରେ ସ୍ତୁତି ସ୍ତୋତ୍ରମାନ ପାଠ କରୁଥିଲେ । କ୍ରମେ ସେଗୁଡିକ ଜନସମାଜରେ ବେଶ୍ ଆଦୃତ ହେଲା । ବିଶେଷତଃ ସ୍ତୁତିସ୍ତୋତ୍ର ଶେଷରେ ଯେଉଁ 'ଫଳଶ୍ରୁତି' ଯୋଡିଦିଆଗଲା, ସେଥିରେ ସାଧାରଣଲୋକେ ଆକୃଷ୍ଟ ହେଲେ । ଏହିପରି ଭାବରେ ଭଜନ ସାହିତ୍ୟ ଭାରତୀୟ ପରମ୍ପରାରେ ଏକ ମୁଖ୍ୟସ୍ଥାନ ଅଧିକାର କଲା ।

ସଂସ୍କୃତ କାବ୍ୟଯୁଗରେ ଯେ କୌଣସି କାବ୍ୟ,ମହାକାବ୍ୟ ଆଦିର ରଚନା ପ୍ରାରମ୍ଭରେ 'ମଙ୍ଗଳାଚରଣ' ମାଧ୍ୟମରେ ନିଜ ନିଜର ଇଷ୍ଟଦେବଦେବୀଙ୍କ ସ୍ତୁତି ରଚନା କରାଯାଇଥିଲା । ସେ ପ୍ରକାର ସ୍ତୁତିର ମୂଳ ଉଦ୍ଦେଶ୍ୟ ଥିଲା ଗ୍ରନ୍ଥଟିକୁ ନିର୍ବିଘ୍ନରେ ଶେଷ କରିବା । ଉତ୍କଳୀୟ କବିମାନେ ଯେତେ ସଂସ୍କୃତଗ୍ରନ୍ଥ ରଚନା କରିଥିଲେ,ସେମାନଙ୍କ ମଧ୍ୟରେ ଅଧିକାଂଶ ଶ୍ରୀଜଗନ୍ନାଥଙ୍କୁ ସ୍ତୁତି କରିଥିବାର ପରିଲକ୍ଷିତ ହୁଏ । ଏଠାରେ ଉଦାହରଣସ୍ୱରୂପ ଦୁଇଟି ଶ୍ରୀଜଗନ୍ନାଥଙ୍କ ସ୍ତୁତିମୂଳକ ଶ୍ଳୋକ ପ୍ରଦତ୍ତ ହେଲା-

"ଅସ୍ତିପ୍ରଶସ୍ତି ଲଳିତୋ ଲବଣାବ୍‌ଧିତୀରେ,
ନୀଳାଚଳାଚଳତଟୀ ମୁକୁଟାୟମାନ ।
ଏକସ୍ତିମୂର୍ତ୍ତି କୁହନାକୃତଚିତ୍ରମୂର୍ତ୍ତିଃ
ଲକ୍ଷ୍ମୀପତିଃ ସକଳଦୈବତ ବନ୍ଦନୀୟଃ"

(ଭକ୍ତିଭାଗବତ ମହାକାବ୍ୟ)

ସଦ୍ୟୋଭିନ୍ନାଞ୍ଜନାଭଃ କନକଚୟଲସଜ୍ଜଳାଲିଙ୍ଗିତାଙ୍ଗଃ
ସ୍ନିଗ୍‌ଧୋଗମ୍ଭୀରନାଦ ସ୍ତ୍ରିଜଗତିଜନତାଲୋଚନାଳୀ ବିନୋଦଃ ।
ଭୂଲକ୍ଷ୍ମୀର୍ମୋଦକାରୀ ତ୍ରିଦଶପତିଧନୁଭୂଷଣାଳଂକୃତୋ ସୌ
ପାୟାନ୍ନୀଳାଦ୍ରିନାଥୋ ନବମୁଦିରବରୋ ଜୀବନାଧାରମୂର୍ତ୍ତିଃ ।।

(ଗୁଣ୍ଡିଚାଚମ୍ପୂ)

ଏହାବ୍ୟତୀତ ଓଡିଶାର ବିଭିନ୍ନ ରାଜବଂଶ ପକ୍ଷରୁ ଯେଉଁ ସବୁ ଦାନପତ୍ର ପ୍ରଦତ୍ତ ହୋଇଥିଲା, ସେଥିରେ ମଧ୍ୟ ରାଜାଙ୍କ ଇଷ୍ଟଦେବ ଓ ଇଷ୍ଟଦେବୀଙ୍କ ଉଦ୍ଦେଶ୍ୟରେ ସ୍ତୁତିମୂଳକ ଶ୍ଳୋକର ଉଲ୍ଲେଖ ଥିବା ଦେଖାଯାଏ ।

ଆମ ଓଡିଆ ସାହିତ୍ୟରେ ଭଜନର ଯୁଗ ଆରମ୍ଭ ହୋଇଛି ମହାକବି ସାରଳାଦାସଙ୍କଠାରୁ । ସାରଳାଦାସ ସ୍ୱରଚିତ ମହାଭାରତରେ ଶ୍ରୀଜଗନ୍ନାଥ ଓ ଝଙ୍କଡ଼ର ଅଧିଷ୍ଠାତ୍ରୀ ଦେବୀ ସାରଳାଙ୍କ ସମେତ ବହୁଦେବଦେବୀଙ୍କ ଭଜନ ଗାନ କରିଛନ୍ତି । ସାରଳାଦାସଙ୍କ ପଦାଙ୍କ ଅନୁସରଣରେ ପରବର୍ତ୍ତୀ କବି ଦାଣ୍ଡିରାମାୟଣ ବା ଜଗମୋହନ ରାମାୟଣର ପ୍ରଣେତା ବଳରାମ ଦାସ, ଭାଗବତର ପ୍ରଣେତା ଅତିବଡୀ ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ, ପ୍ରମୁଖ କବିମାନେ ବହୁସଂଖ୍ୟାରେ ଭଜନ ରଚନା କରି, ଓଡିଆସାହିତ୍ୟରେ ଗୋଟିଏ ସ୍ୱତନ୍ତ୍ର ବିଭାଗ ର ସୃଷ୍ଟି କରିଛନ୍ତି । ଓଡିଆ ଭଜନ ଗୁଡିକୁ ମୁଖ୍ୟତଃ ଚାରିଭାଗରେ ବିଭକ୍ତ କରାଯାଇ ପାରେ । ସେଗୁଡିକ



Digitized by PPRACHIN, SOA

ହେଲା ଶ୍ରୀଜଗନ୍ନାଥ ଁ ଜ. ଅଣାକାର ବା ବ୍ରହ୍ମଙ୍କ ଭଜନ, ଦେବୀଭଜନ ବା ମାଳଶ୍ରୀ ଓ ଅନ୍ୟାନ୍ୟ ଦେବତାଙ୍କ ଭଜନ ।

ଓଡିଆରେ ସହସ୍ରାଧିକ ଭଜନ, ବିଭିନ୍ନ କବିଙ୍କଦ୍ୱାରା, ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ରଚିତ ହୋଇଛି । ଏହାର ଆରମ୍ଭ ଖ୍ରୀଷ୍ଟିୟ ପଞ୍ଚଦଶ ଶତାବ୍ଦୀରୁ ଆରମ୍ଭ ହୋଇଛି । ଭକ୍ତମାନେ ସାଂସାରିକ ଜଞ୍ଜାଳର ସମ୍ମୁଖୀନ ହୋଇ ଭଗବଦ୍ ଭଜନରେ ମନ ବଳାଇଥାଆନ୍ତି । ସେତିକିବେଳେ ସେମାନେ ବିନୀତ ଭାବରେ ପରମେଶ୍ୱରଙ୍କ ଗୁଣବର୍ଣ୍ଣନା କରି ଛନ୍ଦୋବଦ୍ଧ କବିତା ମାଧ୍ୟମରେ ଭଜନ ଗାନ କରନ୍ତି । ପଦରଚନା ମାଧ୍ୟମରେ ଭକ୍ତମାନେ ବିଭୁଙ୍କର କମନୀୟ ରୂପ, ଅତିମାନବୀୟ ଗୁଣାବଳୀ ଓ ବିଭିନ୍ନ କାର୍ଯ୍ୟାବଳୀର ଉଲ୍ଲେଖ କରିଥାନ୍ତି । ସେହି ପ୍ରସଙ୍ଗରେ ଭକ୍ତମାନେ ଧ୍ରୁବ, ପ୍ରହ୍ଲାଦ, ଦ୍ରୌପଦୀ, ଅଜାମିଳ, ହରିଣୀ, ଗଜ ପ୍ରଭୃତିଙ୍କ ଉଦାହରଣ ଦେଇ ପ୍ରଭୁଙ୍କଠାରେ ନିଜ ଦୁଃଖର ନିବାରଣ ପାଇଁ ପ୍ରାର୍ଥନା କରିଥାନ୍ତି । ଆଉ କେତେକ ଭକ୍ତ ନିଜ ନିଜ ଦୁଃଖରେ ଅତିଷ୍ଠହୋଇ, ବିଭୁଙ୍କ କାର୍ଯ୍ୟକଳାପର ସମାଲୋଚନା କରିଥାନ୍ତି । ଏହି ଧରଣର ଭଜନ ରଚନାରେ ସାଲବେଗଙ୍କ ଦ୍ୱାରା ରଚିତ 'ପତିତପାବନାଷ୍ଟକ' ଭାବଗର୍ଭକ ତଥା ଭକ୍ତମନର କରୁଣ ନିବେଦନପୂର୍ଣ୍ଣ ଭଜନ ଭାବରେ ପାଠକ ପାଠିକାଙ୍କ ମହଲରେ ଆଦୃତ ।

ପ୍ରସ୍ତୁତ ଭଜନ ସଂଗ୍ରହରେ ଶ୍ରୀଜୟଦେବଙ୍କ ଦଶାବତାର ସ୍ତୁତି ସମେତ ଛଅଗୋଟି ସଂସ୍କୃତ ଭଜନ, ଚାରିଗୋଟି ହିନ୍ଦୀଭଜନ, ପଞ୍ଚସ୍ତରୀଗୋଟି ଓଡିଆଭଜନ ସ୍ଥାନିତ ହୋଇଛି ଏବଂ ଏହି ଭଜନ ଗୁଡିକ ତେପନ ଜଣ କବିଙ୍କ ରଚନାରୁ ସଂଗୃହୀତ ହୋଇଛି । ବିଶେଷତଃ ଏହି ଭଜନ ସଂଗ୍ରହରେ ରଥଯାତ୍ରା ସମ୍ପର୍କୀୟ ଭଜନ ଗୁଡିକୁ ଅଧିକ ସଂଖ୍ୟାରେ ସନ୍ନିବେଶିତ କରାଯାଇଛି । ଏହା ମଧ୍ୟରେ ପାଞ୍ଚଟି ଭଜନ ନାରୀକବିଙ୍କ ରଚନାରୁ ସଂଗୃହୀତ ହୋଇଛି ଏବଂ ଦୁଇଟି ସମ୍ବଲପୁରୀ ଭଜନ ମଧ୍ୟ ସନ୍ନିବେଶିତ ହୋଇଛି । ଏହିଭଜନ ଗୁଡିକମଧ୍ୟରେ ଆଠଗୋଟି ଭଜନ ଏହି ଶତାବ୍ଦୀର ରଚନା ଏବଂ ଅନ୍ୟାନ୍ୟ ଭଜନ ଗୁଡିକର ସମୟ ଖ୍ରୀଷ୍ଟିୟ ପଞ୍ଚଦଶ ଶତାବ୍ଦୀରୁ ଆରମ୍ଭ କରି ଉନବିଂଶ ଶତାବ୍ଦୀ ମଧ୍ୟରେ ହୋଇଥିବାର ଜଣାଯାଏ ।

ଏହା ମଧ୍ୟରେ ମୁସଲମାନ କବି ସାଲବେଗଙ୍କ ଦ୍ୱାରା ଶତାଧିକ ଭଜନ ଓଡିଶାରେ ମିଳୁଥିଲେ ହେଁ, ତନ୍ମଧ୍ୟରୁ ମାତ୍ର ତେରଗୋଟି ଭଜନ ଏଥିରେ ସଂଯୋଗ କରାଯାଇଛି । ଭକ୍ତକବି ସାଲବେଗ ଜାତିରେ ମୁସଲମାନ ହୋଇଥିଲେ ହେଁ ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ରଚିତ ତାଙ୍କର ଭଜନ ଗୁଡିକ ଅତ୍ୟନ୍ତ ଭାବଗର୍ଭକ ତଥା ବିନମ୍ରଭାବ ସୂଚକ । ସାଲବେଗଙ୍କର ଓଡିଶା ପ୍ରାନ୍ତପଲ୍ଲୀରେ ଅଦ୍ୟାପି ଅନେକ ଭଜନ ଲୁକ୍କାୟିତ ଅବସ୍ଥାରେ ରହିଛି । ଏହି ଶତାବ୍ଦୀର ଦ୍ୱିତୀୟ ମୁସଲମାନ କବି ଶେକ୍ ଦାଉଦ୍ ମହମ୍ମଦଙ୍କର ମଧ୍ୟ ଗୋଟିଏ ଭଜନ ଏଥିରେ ସନ୍ନିବେଶିତ ହୋଇଛି ।

ପ୍ରସ୍ତୁତ ସଙ୍କଳନରେ ପ୍ରଦତ୍ତ ଭଜନ ଗୁଡିକ ବ୍ୟତୀତ ଅନ୍ୟ ସହସ୍ରାଧିକ ଶ୍ରୀଜଗନ୍ନାଥଙ୍କ ଭଜନ ରହିଛି । ପ୍ରାଚୀନ କବିମାନଙ୍କ ରଚନା ମଧ୍ୟରୁ ବହୁସଂଖ୍ୟକ ଭଜନ ଅଦ୍ୟାପି ଲୋକଲୋଚନକୁ ଆସି ପାରିନାହିଁ ।

ପ୍ରସ୍ତୁତ ସଙ୍କଳନରେ ପ୍ରଦତ୍ତ ମୀରାବାଈଙ୍କ ଭଜନଟି ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି ଯୋଗାଇଥିବାରୁ, ମୁଁ ତାଙ୍କଠାରେ କୃତଜ୍ଞତା ଜ୍ଞାପନ କରୁଛି । ଅନ୍ୟାନ୍ୟ ଭଜନ ଗୁଡିକୁ ରାଜ୍ୟସଂସ୍କୃତି ବିଭାଗ ପକ୍ଷରୁ ପ୍ରକାଶିତ 'ଭଜନସଂଗ୍ରହ', ସ୍ୱର୍ଗତ କ୍ଷେତ୍ରବାସୀ ନାୟକଙ୍କ ସମ୍ପାଦିତ ଶ୍ରୀଜଗନ୍ନାଥ ଭଜନ, ସ୍ୱର୍ଗତ ମୁରାରିମୋହନ ଜେନାଙ୍କ 'ଜନିକଟେ ଜଗନ୍ନାଥ' ଓ ସ୍ୱର୍ଗତ କେଦାର ନାଥ ମହାପାତ୍ରଙ୍କ 'ଖୁରୁଧା ଇତିହାସ'ରୁ ସଂଗୃହୀତ ହୋଇଛି ।

ପଣ୍ଡିତ ନୀଳମଣି ମିଶ୍ର

କେଦାରନାଥ ଗବେଷଣା ପ୍ରତିଷ୍ଠାନ
ଭୁବନେଶ୍ୱର-୨
ରଥଯାତ୍ରା, ଜୁଲାଇ ୧୦,୧୯୯୪



Digitized by PPRACHIN, SOA



# ସୂଚୀପତ୍ର



Digitized by PPRACHIN, SOA



Digitized by PPRACHIN, SOA

# ୧

## ପ୍ରଳୟପୟୋଧିଜଳେ

ରାଗ–ମାଳବ



ପ୍ରଳୟପୟୋଧିଜଳେ ଧୃତବାନସି ବେଦମ୍
ବିହିତବହିତ୍ରଚରିତ୍ର ମଖେଦମ୍,
କେଶବ !
ଧୃତମୀନଶରୀର, ଜୟଜଗଦୀଶ ହରେ । ।

କ୍ଷିତିରତିବିପୁଳତରେ ତବ ତିଷ୍ଠତି ପୃଷ୍ଠେ,
ଧରଣିଧରଣକିଣଚକ୍ରଗରିଷ୍ଠେ
କେଶବ !
ଧୃତକଚ୍ଛପରୂପ, ଜୟ ଜଗଦୀଶ ହରେ । ।

ବସତି ଦଶନଶିଖରେ ଧରଣୀ ତବ ଲଗ୍ନା
ଶଶିନି କଳଙ୍କକଳେବ ନିମଗ୍ନା
କେଶବ !
ଧୃତଶୂକରରୂପ, ଜୟ ଜଗଦୀଶ ହରେ । ।

ତବ କରକମଳବରେ ନଖମଦ୍ଭୁତଶୃଙ୍ଗମ୍
ଦଳିତହିରଣ୍ୟକଶିପୁତନୁଭୃଙ୍ଗମ୍
କେଶବ !
ଧୃତନରହରିରୂପ, ଜୟ ଜଗଦୀଶ ହରେ । ।

ଛଳୟସି ବିକ୍ରମଣେ ବଳିମଦ୍ଭୁତବାମନ
ପଦନଖନୀରଜନିତଜନପାବନ
କେଶବ !
ଧୃତବାମନରୂପ, ଜୟ ଜଗଦୀଶ ହରେ । ।



Digitized by PPRACHIN, SOA

 କ୍ଷତ୍ରିୟରୁଧିରମୟେ ଜଗଦପଗତପାପମ୍
ସ୍ନପୟସି ପୟସି ଶମିତଭବତାପମ୍
କେଶବ !
ଧୃତଭୃଗୁପତିରୂପ , ଜୟ ଜଗଦୀଶ ହରେ । ।

ବିତରସି ଦିକ୍ଷୁ ରଣେ ଦିକ୍‌ପତିକମନୀୟମ୍
ଦଶମୁଖ ମୌଳିବଳିଂ ରମଣୀୟମ୍
କେଶବ !
ଧୃତରାମଶରୀର, ଜୟ ଜଗଦୀଶ ହରେ । ।

ବହସି ବପୁଷି ବିଶଦେ ବସନଂ ଜଳଦାଭମ୍
ହଳହତିଭୀତିମିଳିତଯମୁନାଭମ୍
କେଶବ !
ଧୃତହଳଧରରୂପ, ଜୟ ଜଗଦୀଶ ହରେ । ।

ନିନ୍ଦସି ଯଜ୍ଞବିଧେରହହ ଶ୍ରୁତିଜାତମ୍
ସଦୟହୃଦୟ ଦର୍ଶିତପଶୁଘାତମ୍
କେଶବ !
ଧୃତବୁଦ୍ଧଶରୀର, ଜୟ ଜଗଦୀଶ ହରେ । ।

ମ୍ଳେଚ୍ଛନିବହ ନିଧନେ କଳୟସି କରବାଳମ୍
ଧୂମକେତୁମିବ କିମପି କରାଳମ୍
କେଶବ !
ଧୃତକଳ୍କିଶରୀର, ଜୟ ଜଗଦୀଶ ହରେ । ।



ବେଦାନୁଦ୍ଧରତେ ଜଗନ୍ତିବହତେ ଭୂଗୋଳମୁଦ୍‌ବିଭ୍ରତେ
ଦୈତ୍ୟଂ ଦାରୟତେ ବଳିଂ ଛଳୟତେ କ୍ଷତ୍ରକ୍ଷୟଂ କୁର୍ବତେ ।
ପୌଲସ୍ତ୍ୟଂ ଜୟତେ ହଳଂ କଳୟତେ କାରୁଣ୍ୟମାତନ୍ୱତେ
ମ୍ଳେଚ୍ଛାନ୍‌ମୂର୍ଚ୍ଛୟତେ ଦଶାକୃତିକୃତେ କୃଷ୍ଣାୟ ତୁଭ୍ୟ ନମଃ ।

Digitized by PPRACHIN, SOA



## ୨

## ଶ୍ରିତକମଳାକୁଚମଣ୍ଡଳ

ରାଗ-ଗୁର୍ଜରୀ

ଶ୍ରିତକମଳାକୁଚମଣ୍ଡଳ ଧୃତକୁଣ୍ଡଳ,
କଳିତଲଳିତବନମାଳ,
ଜୟଜୟ ଦେବ ହରେ ।।

ଦିନମଣିମଣ୍ଡଳମଣ୍ଡନ ଭବଖଣ୍ଡନ,
ମୁନିଜନମାନସହଂସ !
ଜୟ ଜୟ ଦେବ ହରେ ।।

କାଳିୟବିଷଧରଗଞ୍ଜନ ଜନରଞ୍ଜନ .
ଯଦୁକୁଳନଳିନଦିନେଶ !
ଜୟ ଜୟ ଦେବ ହରେ ।।

ମଧୁମୁରନରକବିନାଶନ ଗରୁଡାସନ,
ସୁରକୁଳକେଳିନିଦାନ !
ଜୟ ଜୟ ଦେବ ହରେ ।

ଅମଳକମଳଦଳ ଲୋଚନ ଭବମୋଚନ,
ତ୍ରିଭୁବନଭବନନିଦାନ !
ଜୟ ଜୟ ଦେବ ହରେ ।।

ଜନକସୁତାକୃତଭୂଷଣ ଜିତଦୂଷଣ,
ସମରଶମିତଦଶକଣ୍ଠ !
ଜୟ ଜୟ ଦେବ ହରେ ।।



Digitized by PPRACHIN, SOA

ଅଭିନବଜଳଧରସୁନ୍ଦର ଧୃତମନ୍ଦର.
ଶ୍ରୀମୁଖଚନ୍ଦ୍ରଚକୋର !
ଜୟ ଜୟ ଦେବ ହରେ ।।

ତବ ଚରଣେ ପ୍ରଣତା ବୟମିତିଭାବୟ,
କୁରୁ କୁଶଳଂ ପ୍ରଣତେଷୁ,
ଜୟ ଜୟ ଦେବ ହରେ ।।

ଶ୍ରୀଜୟଦେବକବେରିଦଂ କୁରୁତେ ମୁଦମ୍,
ମଙ୍ଗଳମୁଜ୍ଜ୍ୱଳଗୀତମ୍,
ଜୟ ଜୟ ଦେବ ହରେ ।।

---

ବିଶ୍ୱପ୍ରସିଦ୍ଧ ମହାକବି ଜୟଦେବ ପୂର୍ବତନ ପୁରୀଜିଲ୍ଲାର ପ୍ରାଚୀନଦୀ ତଟବର୍ତ୍ତୀ କେନ୍ଦୁବିଲ୍ୱ ଗ୍ରାମରେ ଖ୍ରୀଷ୍ଟିୟ ଦ୍ୱାଦଶ ଶତାବ୍ଦୀରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ଓ ମାତାଙ୍କ ନାମ ଯଥାକ୍ରମେ ଭୋଜଦେବ ଓ ରାଧାଦେବୀ ଥିଲା । ସେ ପଦ୍ମାବତୀ ନାମ୍ନୀ ଦେବଦାସୀଙ୍କୁ ବିବାହ କରି, ପୁରୀର ଶ୍ରୀମନ୍ଦିରରେ, ଶ୍ରୀଜଗନ୍ନାଥ ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଅଭେଦ କଳ୍ପନା ପୂର୍ବକ 'ଗୀତଗୋବିନ୍ଦ' ଶୀର୍ଷକ ଖଣ୍ଡିଏ ଗୀତକାବ୍ୟ ରଚନା କରି, ଇଷ୍ଟଦେବ ମାଧବସ୍ୱରୂପୀ ଜଗନ୍ନାଥ ମହାପ୍ରଭୁଙ୍କୁ ସମର୍ପଣ କରିଥିଲେ ।



Digitized by PPRACHIN, SOA

୩

## ଗୋପଗୋକୁଳରକ୍ଷଣ

ଗୋପଗୋକୁଳରକ୍ଷଣକ୍ଷଣଧାରିତାତୁଳଭୂଭୃତଂ
ନୀଳମଣିମୟ ଦଣ୍ଡସଙ୍ଗତମାତପତ୍ରମିବୋଦ୍ଧୃତମ୍
ନମତ କଂସାସୁରନିସୂଦନମଖିଳମୁନିଜନବନ୍ଦିତଂ
ଜନନପାଳନ ନାଶକାରଣ ନୀଳଗିରିପତିମଚ୍ୟୁତମ୍
(ଅଭିନବଗୀତଗୋବିନ୍ଦ)

ଅର୍ଥ – ହେ ପ୍ରଭୁ ନୀଳଗିରିନାଥ ଅଚ୍ୟୁତ ! ତୁମେ ଗୋପପୁରର ଗୋକୁଳ ରକ୍ଷା କରିବା ପାଇଁ, ଅତୁଳନୀୟ ପର୍ବତ ଗୋବର୍ଦ୍ଧନ ଗିରିକୁ ଧାରଣ କରିଥିଲ, ନୀଳମଣିମୟ ଦଣ୍ଡ ଦ୍ୱାରା ଛତ୍ର ଧାରଣ କଲା ପରି, ସେହି ପର୍ବତକୁ ଧାରଣ କରିଥିଲ, ହେ କଂସାସୁରର ବିନାଶକାରୀ, ତୁମେ ଅଖିଳ ସଂସାରର ମୁନିମାନଙ୍କ ଦ୍ୱାରା ଚିରବନ୍ଦିତ । ତୁମେ ମଧ୍ୟ ସୃଷ୍ଟି ସ୍ଥିତି ଓ ସଂହାରର କର୍ତ୍ତାରୂପେ ଚିର ପୂଜିତ ଅଟ ।

---

ଏଠାରେ କବି ଶ୍ରୀଜଗନ୍ନାଥ ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଅଭେଦ କଳ୍ପନା କରି, ଶ୍ରୀଜଗନ୍ନାଥଙ୍କ ଶ୍ରୀକୃଷ୍ଣ ଅବତାରର ଘଟଣାବଳୀକୁ ବର୍ଣ୍ଣନା କରିଛନ୍ତି ।

ପ୍ରସ୍ତୁତ ଶ୍ଲୋକଟି ଗଜପତି ପୁରୁଷୋତ୍ତମଦେବଙ୍କ ନାମରେ ଭଣିତ ଅଭିନବ ଗୀତ ଗୋବିନ୍ଦର ଦଶାବତାର ସ୍ତୁତି ମଧ୍ୟରୁ ନବମ ଅବତାର ରୂପେ ଆବିର୍ଭୂତ ହୋଇଥିବା ଶ୍ରୀକୃଷ୍ଣଙ୍କ ବର୍ଣ୍ଣନା । ଏହାର ରଚନା କାଳ ପଞ୍ଚଦଶ ଶତାବ୍ଦୀର ଶେଷାର୍ଦ୍ଧ ଏବଂ ଗ୍ରନ୍ଥଟିର ମୂଳ ରଚୟିତା ହେଉଛନ୍ତି କବିଚନ୍ଦ୍ର ରାୟଦିବାକର ମିଶ୍ର । ସେ 'ଭାରତାମୃତ ମହାକାବ୍ୟ', 'ଜାନକୀ ପ୍ରମୋଦ ନାଟକ' ପ୍ରଭୃତି ବହୁ ଗ୍ରନ୍ଥର ପ୍ରଣେତା ଅଟନ୍ତି ।

Digitized by PPRACHIN, SOA

# ୪

## ଯୋ ଦ୍ୱେଧା ପ୍ରକୃତି



ଯୋ ଦ୍ୱେଧା ପ୍ରକୃତି ପୁମାନିତିମତଃ ସ୍ତ୍ରୀପୁଂସଦେହାଶ୍ରିତୋ
ଯସ୍ତ୍ରେଧାବିଧିବିଷ୍ଣୁଶଙ୍କରବପୂର୍ଦ୍ଧାରୀ ଦରୀଦୃଶ୍ୟତେ ।
ଶ୍ରୀମନ୍ନୀଳଗିରୌ ଚ ଦାରୁତନୁଧୃଗ୍ ଯୋ ସୌ ଚତୁର୍ଦ୍ଧାସ୍ଥିତୋ
ରାଧାକୃଷ୍ଣତନୂଧରୋ ବିଜୟତେ ବୃନ୍ଦାବନେ ସ ପ୍ରଭୁଃ ।।

(ମୁକୁନ୍ଦବିଳାସ)

ଅର୍ଥ- ଯେଉଁ ମହାପ୍ରଭୁ ପୁରୁଷ ଓ ପ୍ରକୃତି ରୂପେ ସଂସାରର ସ୍ତ୍ରୀ ଓ ପୁରୁଷମାନଙ୍କ ହୃଦୟ ମଧ୍ୟରେ ବିରାଜମାନ କରିଛନ୍ତି, ସେ ପୁଣି ବ୍ରହ୍ମା, ବିଷ୍ଣୁ ଓ ଶଙ୍କର ରୂପେ ତ୍ରିମୂର୍ତ୍ତି ଭାବରେ ଜନସମାଜରେ ପରିଲକ୍ଷିତ ହୋଇଛନ୍ତି । ସେହି ପ୍ରଭୁ ପରମେଶ୍ୱର ନୀଳଗିରି (ଶ୍ରୀକ୍ଷେତ୍ର)ରେ ଦାରୁବିଗ୍ରହ ରୂପେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ଭାବରେ ଚତୁର୍ଦ୍ଧା ରୂପ ଧାରଣ କରିଛନ୍ତି । ପୁଣି ସେହି ପ୍ରଭୁ ଶ୍ରୀରାଧା ଓ ଶ୍ରୀକୃଷ୍ଣ ତନୁ ଧାରଣ କରି ବୃନ୍ଦାବନରେ ବିଜୟବାନା ଉଡାଇଛନ୍ତି । ଏଠାରେ ମଧ୍ୟ କବି ଶ୍ରୀଜଗନ୍ନାଥଙ୍କୁ ପରଂବ୍ରହ୍ମ ପରମେଶ୍ୱର ଭାବରେ ବର୍ଣ୍ଣନା କରିଛନ୍ତି ।

---

'ଗୀତ ଗୋବିନ୍ଦ'ର ଅନ୍ୟତମ ଅନୁକୃତି ରୂପେ 'ମୁକୁନ୍ଦବିଳାସ' ଗ୍ରନ୍ଥଟିକୁ ଗ୍ରହଣ କରାଯାଏ । ପ୍ରସ୍ତୁତ ଶ୍ଳୋକଟି 'ମୁକୁନ୍ଦବିଳାସ'ରୁ ଗ୍ରହଣ କରାଯାଇଛି । ଏହି ଗୀତିକାବ୍ୟର ପ୍ରଣେତା ହେଉଛନ୍ତି-ଯତୀନ୍ଦ୍ର ରଘୁତ୍ତମ ତୀର୍ଥ । କବିଙ୍କ ସମୟ ଖ୍ରୀ-ଅ: ୧୬୬୭ ଓ ତାଙ୍କ ବାସସ୍ଥାନ ଅଚ୍ୟୁତରାଜପୁର (ବାଣପୁର) ।



Digitized by PPRACHIN, SOA

## ୪

# ଶ୍ରୀଜଗନ୍ନାଥାଷ୍ଟକ

କଦାଚିତ୍ କାଳିନ୍ଦୀତଟବିପିନସଙ୍ଗୀତକରବୋ
ମୁଦାଭୀରୀନାରୀବଦନକମଳାସ୍ୱାଦମଧୁପଃ ।
ରମାଶମ୍ଭୁବ୍ରହ୍ମାମରପତିଗଣେଶାର୍ଚ୍ଚିତପଦୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୧ ।

ଭୁଜେ ସବ୍ୟେ ବେଣୁଂ ଶିରସି ଶିଖିପିଚ୍ଛଂ କଟିତଟେ ଦୁକୂଳଂ,
ନେତ୍ରାନ୍ତେ ସହଚରକଟାକ୍ଷଂ ବିଦଧତେ ।
ସଦା ଶ୍ରୀମଦ୍ବୃନ୍ଦାବନବସତିଲୀଳାପରିଚୟୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୨ ।

ମହାମ୍ଭୋଧେସ୍ତୀରେ କନକରୁଚିରେ ନୀଳଶିଖରେ
ବସନ୍ ପ୍ରାସାଦାନ୍ତଃ ସହଜବଳଭଦ୍ରେଣ ବଳିନା ।
ସୁଭଦ୍ରାମଧ୍ୟସ୍ଥଃ ସକଳସୁରସେବାବସରଦୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୩ ।

ଅନୁବାଦ-

ଶ୍ରୀକୃଷ୍ଣ ରୂପରେ ଯମୁନା ତଟର ବନରେ ବଂଶୀବାଦନ ।
ଆନନ୍ଦେ କରିଣ ଗୋପୀ-ମୁଖପଦ୍ମୁଁ କରିଅଛ ସୁଧାପାନ ।
ରମା-ଶିବ-ବ୍ରହ୍ମା ବାସବ ଗଣେଶ ପୂଜନ୍ତି ପଦ ତୁମ୍ଭର ।
ପ୍ରଭୁ ଜଗନ୍ନାଥ ନୟନର ପଥେ ଗୋଚର ହୁଅନ୍ତୁ ମୋର । ।

ବାମ ହସ୍ତେ ବଂଶୀ ଶିରେ ଶିଖିପୁଚ୍ଛ କଟିଦେଶେ ପୀତାମ୍ବର ।
ସହଚର-ଗଣେ କହୁଥିଲ ପ୍ରଭୁ ସଙ୍କେତରେ ନୟନର ।
ଶ୍ରୀବୃନ୍ଦାବନର ବାସ ଆଉ ଲୀଳା ଅତ୍ୟନ୍ତ ପ୍ରିୟ ତୁମ୍ଭର ।
ପ୍ରଭୁ ଜଗନ୍ନାଥ ନୟନର ପଥେ ଗୋଚର ହୁଅନ୍ତୁ ମୋର । ।



Digitized by PPRACHIN, SOA

କୃପାପାରାବାରଃ ସଜଳଜଳଦଶ୍ରେଣୀରୁଚିରୋ
ରମାବାଣୀରାମଃ ସ୍ଫୁରଦମଳପଦ୍ମେକ୍ଷଣମୁଖଃ ।
ସୁରେନ୍ଦ୍ରୈରାରାଧ୍ୟଃ ଶ୍ରୁତିଗଣଶିଖାଗୀତଚରିତୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୪ ।

ରଥାରୂଢୋ ଗଚ୍ଛନ୍ ପଥି ମିଳିତଭୂଦେବପଟଳୈଃ
ସ୍ତୁତିପ୍ରାଦୁର୍ଭାବଂ ପ୍ରତିପଦମୁପାକର୍ଣ୍ଣ୍ୟ ସଦୟଃ ।
ଦୟାସିନ୍ଧୁର୍ବନ୍ଧୁଃ ସକଳଜଗତାଂ ସିନ୍ଧୁସୁତୟା
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୫ ।

ପରଂବ୍ରହ୍ମାପୀଡ୍ୟଃ କୁବଳୟଦଳୋତ୍ଫୁଲ୍ଲନୟନୋ
ନିବାସୀ ନୀଳାଦ୍ରୌ ନିହିତଚରଣୋ ନନ୍ତ ଶିରସି ।
ରସାନନ୍ଦୀ ରାଧାସରସବପୁରାଲିଙ୍ଗନସୁଖୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୬ ।

---

ମହୋଦଧି ତୀରେ କନକ ବରନ ଶ୍ରୀନୀଳଗିରି-ଶିଖରେ ।
ମନ୍ଦିରେ ବସିଛ ମହାବଳୀ ଭ୍ରାତା ବଳଭଦ୍ର ସହିତରେ ।
ମଧ୍ୟରେ ସୁଭଦ୍ରା, ସକଳ ଦେବଙ୍କୁ ଦିଅ ସେବା ଅବସର ।
ପ୍ରଭୁ ଜଗନ୍ନାଥ ନୟନର ପଥେ ଗୋଚର ହୁଅନ୍ତୁ ମୋର । ।

କୃପାସିନ୍ଧୁ ପ୍ରଭୁ ସଜଳ ଜଳଦ-ସମ ଶ୍ରୀଅଙ୍ଗର ବର୍ଣ୍ଣ ।
ରମା-ବାଣୀ-ରତ ପ୍ରଫୁଲ୍ଲ-କମଳ-ତୁଲ୍ୟ ନୟନ ବଦନ ।
ସୁରେଶାଦି-ବନ୍ଦ୍ୟ ଉପନିଷଦଟି ଘୋଷଇ କୀର୍ତ୍ତି ତୁମ୍ଭର ।
ପ୍ରଭୁ ଜଗନ୍ନାଥ ନୟନର ପଥେ ଗୋଚର ହୁଅନ୍ତୁ ମୋର । ।

ରଥରେ ଆରୋହି ବଡଦାଣ୍ଡେ ପ୍ରଭୁ ଯେତେବେଳେ ତୁମ୍ଭେ ଯାଅ ।
ବ୍ରାହ୍ମଣମାନଙ୍କ ସ୍ତୁତି କର୍ଣ୍ଣେ ଶୁଣି ହୁଅ ଅତ୍ୟନ୍ତ ସଦୟ ।
ଆହେ କୃପାସିନ୍ଧୁ ଜଗତର ବନ୍ଧୁ ମହାଲକ୍ଷ୍ମୀ ସଙ୍ଗତ ।
ପ୍ରଭୁ ଜଗନ୍ନାଥ ନୟନର ପଥେ ଗୋଚର ହୁଅନ୍ତୁ ମୋର । ।



Digitized by PPRACHIN, SOA

ନବୈ ପ୍ରାର୍ଥ୍ୟଂ ରାଜ୍ୟଂ ନ ଚ କନକମାଣିକ୍ୟବିଭବଂ
ନ ଯାଚେଽହଂ ରମ୍ୟାଂ ନିଖିଳଜନକାମ୍ୟାଂ ବରବଧୂମ୍ ।
ସଦା କାଳେ କାଳେ ପ୍ରମଥପତିନା ଗୀତଚରିତୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୭ ।

ହର ତ୍ୱଂ ସଂସାରଂ ଦ୍ରୁତତରମସାରଂ ସୁରପତେ !
ହର ତ୍ୱଂ ପାପାନାଂ ବିତତିମପରାଂ ଯାଦବପତେ !
ଅହୋ ଦୀନାନାଥଂ ନିହିତମଚଳଂ ନିଶ୍ଚିତପଦଂ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୮ ।

---

ନିରାକାର ବ୍ରହ୍ମ ହୋଇ ସର୍ବ ପୂଜ୍ୟ ଉତ୍ପଳ ଦଳ ନୟନ ।
ନୀଳଗିରି-ବାସୀ ଅନନ୍ତଙ୍କ ଶିରେ ସ୍ଥାପିଛ ପ୍ରଭୁ ଚରଣ ।
ଶ୍ରୀରାଧା ଦେବୀଙ୍କ ପ୍ରେମ ପୂର୍ଣ୍ଣ ତନୁ ଆଲିଙ୍ଗନରେ ବିଭୋର ।
ପ୍ରଭୁ ଜଗନ୍ନାଥ ନୟନର ପଥେ ଗୋଚର ହୁଅନ୍ତୁ ମୋର ।

ମାଗେନାହିଁ ପ୍ରଭୁ ରାଜ୍ୟଟି ତୁମ୍ଭଙ୍କୁ ସ୍ୱର୍ଣ୍ଣ ଧନ ଧାନ୍ୟ ମଣି ।
ମାଗେନାହିଁ ପ୍ରଭୁ ସର୍ବଜନକାମ୍ୟା ଅତି ସୁନ୍ଦର ରମଣୀ
ସଦାବେଳେ ପ୍ରଭୁ ଦେବ ମହେଶ୍ୱର ସ୍ତୁତି କରନ୍ତି ତୁମ୍ଭର ।
ପ୍ରଭୁ ଜଗନ୍ନାଥ ନୟନର ପଥେ ଗୋଚର ହୁଅନ୍ତୁ ମୋର ।।

ଆହେ ସୁରବର ! ଶୀଘ୍ର ଦୂରକର ମୋର ଅସାର ସଂସାର ।
ଆହେ ଯଦୁପତି ହର ମୋ ଝଟିତି ବିରାଟ ପାପର ଭାର
ଦୀନ ଅନାଥକୁ ଦେଇଥାଅ ପ୍ରଭୁ ମୋକ୍ଷ ସଂପଦ ତୁମ୍ଭର ।
ପ୍ରଭୁ ଜଗନ୍ନାଥ ନୟନର ପଥେ ଗୋଚର ହୁଅନ୍ତୁ ମୋର ।।

---

ଶ୍ରୀ ଜଗନ୍ନାଥାଷ୍ଟକଟି ଶଙ୍କରାଚାର୍ଯ୍ୟ, ଶ୍ରୀ ଚୈତନ୍ୟ ଦେବ ଓ ପଣ୍ଡିତରାଜ ଜଗନ୍ନାଥଙ୍କ ରଚନା ବୋଲି ଭିନ୍ନ ଭିନ୍ନ ଆଲୋଚକଙ୍କ ମତ । କୌଣସି ମତ ସପକ୍ଷରେ କୌଣସି ପ୍ରକାର ଦୃଢ଼ ଯୁକ୍ତି ମିଳେ ନାହିଁ । ପୁରୀର ଗୋବର୍ଦ୍ଧନପୀଠର ଯେ କୌଣସି ଆଚାର୍ଯ୍ୟ ଶଙ୍କରାଚାର୍ଯ୍ୟ ନାମରେ ନାମିତ ହୁଅନ୍ତି । ତେଣୁ ଆଦିଶଙ୍କରାଚାର୍ଯ୍ୟ ପ୍ରସ୍ତୁତ ଭଜନର ପ୍ରଣେତା ନ ହୋଇ, ପରବର୍ତ୍ତୀକାଳୀନ କେହି ଜଣେ ଶଙ୍କରାଚାର୍ଯ୍ୟ ଏହି ଅଷ୍ଟକଟିର ପ୍ରଣେତା ବୋଲି କହିଲେ ଅସମୀଚୀନ ହେବ ନାହିଁ । ପ୍ରସ୍ତୁତ ଅଷ୍ଟକଟିର ଓଡିଆ ପଦ୍ୟାନୁବାଦ କରିଛନ୍ତି-ଓଡିଶାର ବିଶିଷ୍ଟ ସଂସ୍କୃତଜ୍ଞ ଡକ୍ଟର ସଦାଶିବ ପ୍ରହରାଜ ।

Digitized by PPRACHIN, SOA

# ୨

## ପତିତପାବନାଷ୍ଟକ

ସଚିନ୍ତ ଇବ ଲକ୍ଷ୍ୟସେ ସପଦି ମେ ଚରିତ୍ରଂ ସ୍ମୃତ୍ୱା
ପରଂ କଳିତ ସାହସଃ ପତିତପାବନତ୍ୱବ୍ରତାତ୍
ନ ମାମଗଣୟଃ ପୁରା ନହି ବିଚାରକାଲୋ ଽଧୁନା
ବ୍ରତଂ ବିସୃଜ ବା ଅଥବା ବରଦ ପାବୟୈନଂ ଜନଂ

ନ ରାଘବ ! ନ ବାୟସୋ ନଖଲୁ କୃଷ୍ଣ ଚୈଦ୍ୟୋ ଽସ୍ମ୍ୟହଂ
ନ ଖଲ୍ୱହମଜାମିଳୋ ନରକନାଶନାରାୟଣ
ପ୍ରଧାନମପରାଧିନୀ ପରିବୃତଂ ଚ ମାଂ ପାପିନଂ
କ୍ଷମାଜଲନିଧେ ! ବିଦନ୍ ସପଦି ସାବଧାନୋ ଭବ ।

ଅନୁବାଦ - ହେ ମହାପ୍ରଭୋ ! ମୋର ପତିତ ଚରିତ୍ର ସ୍ମରଣ କରି ତମେ ଚିନ୍ତାକୁଳ ହୋଇ ପଡିଛ ବୋଲି ମୋର ମନେହୁଏ । କିନ୍ତୁ 'ପତିତତାରଣ' ତୁମର ବ୍ରତ ହୋଇଥିବାରୁ, ମୁଁ ଏତେବଡ ସାହସ କରିଛି । ମୋତେ ପୂର୍ବରୁ ତୁମେ ଭକ୍ତ ମଧ୍ୟରେ ଗଣନା କରିନାହଁ କିମ୍ବା ବର୍ତ୍ତମାନ ଆଉ ବିଚାର କରିବାର ସମୟ ନାହିଁ । ତେଣୁ ହେ ମହାପ୍ରଭୋ ! ମୋତେ ପବିତ୍ର କର କିମ୍ବା ନିଜର ବ୍ରତ ପରିହାର କର ।

ହେ ରାଘବ ! ମୁଁ କାକ ନୁହେଁ ଯେ ମୋତେ ଶରନିକ୍ଷେପ କରି ମୋର ଅପରାଧ ନିବାରଣ କରି ଦେବ ! ହେ ଶ୍ରୀକୃଷ୍ଣ ! ମୁଁ ଶିଶୁପାଳ ନୁହେଁ ଯେ, ମୋତେ ଚକ୍ରରେ ଛେଦନ କରି ଉଦ୍ଧାର କରିବ । ହେ ନାରାୟଣ ! ମୁଁ ଅଜାମିଳ ନୁହେଁ ଯେ, ମୋତେ ଥରେ ମାତ୍ର ପୁତ୍ରନାମ ଧରିବା ମାତ୍ରେ ଉଦ୍ଧାର କରିଦେବ । ହେ କ୍ଷମାସାଗର ! ପ୍ରଧାନ ପ୍ରଧାନ ଅପରାଧୀମାନଙ୍କ ଦ୍ୱାରା ମୁଁ ପରିବୃତ ହୋଇଛି । ମୋତେ ପାପୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ବୋଲି ଶୀଘ୍ର ଉଦ୍ଧାର କରିବାର ଚିନ୍ତା କର ।





Digitized by PPRACHIN, SOA

ଯଦୁଦ୍ୟଦଘଲେଖନାକଳନଜାଗ୍ରଦଗ୍ରାଙ୍ଗୁଳି
ମିଳତ୍ ପ୍ରଖରଲେଖନୀମୁଖବିଘାତ ବୀତୋଦ୍ୟମାଃ ।
ଅଳଂ କିଳ ଲଲଜ୍ଜିରେ ସପଦି ଚିତ୍ରଗୁପ୍ତାଦୟଃ
ସ ଏଷ ପତିତାଗ୍ରଣୀ ସଦୟ ରକ୍ଷ ଦକ୍ଷୋଽସି ଚେତ୍ ।

ବିଦନ୍ନପି ହୃଦନ୍ତରେ ପ୍ରତିପଦଂ ଯଦହଂକୃତେ
ଯତୋ ଯଦୁପତେ ନତେ ବିଫଳତା ବ୍ରତେସ୍ୟାଦିତି ।
ଯତୋ ସି ଜଗତୋ ଗୁରୁଃ ସ୍ମୃତିନିଷେଧସ୍ତେ ତତୋ
ନ ନାମ ନ ଭଜାମି ଯଦ୍ୟଥ ବୃଥା କ୍ରୁଧଂ ମା କୃଥାଃ ।

ଅନୁବାଦ – ମୋ' ପରି ନିକୃଷ୍ଟ ପାପୀ ଜଗତରେ ଆଉ କେହି ନାହାନ୍ତି । କାରଣ ନିତ୍ୟପ୍ରତି ପୁଞ୍ଜୀଭୂତ ମୋ' ପାପରାଶିର ଗଣନା କରିବାରେ ଚିତ୍ରଗୁପ୍ତଙ୍କ ଅଙ୍ଗୁଳିର ଅଗ୍ରଭାଗରେ ସ୍ଥିତ ଲେଖନୀର ମୁନ ଘୋରି ହୋଇଗଲାଣି; ତେଣୁ ସେ ନିଜର ଅକ୍ଷମତା ଲାଗି ନିଜେ ଲଜ୍ଜିତ ହେଲେଣି, ମୁଁ ପତିତ ପାପୀମାନଙ୍କ ମଧ୍ୟରେ ଶ୍ରେଷ୍ଠ । ହେ ଦୟାସାଗର ! ଉଦ୍ଧାର କରିବା ଭଳି ତୁମର ଶକ୍ତି ଥିଲେ, ମୋତେ ରକ୍ଷା କର ।

ହେ ଯଦୁପତେ ! ତୁମର ପତିତ ଉଦ୍ଧାରଣ ବ୍ରତ କେବେହେଲେ ବିଫଳ ହୁଏ ନାହିଁ; ଏହି ଧାରଣା ମୋ' ହୃଦୟରେ ଜାତ ହେବାରୁ, ମୁଁ ମୋ' ପାପ ସମ୍ବନ୍ଧରେ ସଚେତନ ହୋଇଛି । ତୁମେ ଜଗଦ୍‌ଗୁରୁ; ସ୍ମୃତିଶାସ୍ତ୍ରରେ ତୁମର ଯେଉଁ ନାମ ନାହିଁ, ସେହି ନାମକୁ ମଧ୍ୟ ମୁଁ ଜପ କରୁ ନାହିଁ । ମୁଁ ତୁମ ନାମ ଜପ କରୁ ନାହିଁ ବୋଲି ମୋ'ପ୍ରତି ଅବହେଳା ପ୍ରଦର୍ଶନ କର ନାହିଁ ।


Digitized by PPRACHIN, SOA

अनन्त ! ଯଦଘାବଳୀ ମନନସାବଧାନାତ୍ମକୈ
ର୍ନିଜେ ଦୁରିତମଣ୍ଡଳେ ନିଖିଳସାକ୍ଷିଭିର୍ନେକ୍ଷିତୋ ।
ଜନା ଜଗତି ନିର୍ଭୟା ଜୟଜୟେତି ଜଲ୍ପନ୍ତ୍ୟମୁଂ
ପ୍ରଭୋ ଖଳଧୁରନ୍ଧରଂ ପତିତପାବନଞ୍ଚେଦବ ।

ଅନେକପତିତାଧିପାନବତି ଚକ୍ରବର୍ତ୍ତୀ ଯଥା
ନୃପାନୟମସଜ୍ଜନଃ ପତିତପାବନତ୍ୱେନ ତୁ ।
ଇତି ପ୍ରତିଦିଶଂ ଖଳାଃ ପତିତପାବନଂ ମାଂ ବିଦୁଃ
ନ ପାବୟସି ଚେତ୍ ଫଳଂ ନ ତୁ ଭବେଦିଦଂ କେବଲମ୍ ।।

କଦାପି ହି ପଦାମୃତଂ ତବ ମୟାପି ନାସ୍ୱାଦିତଂ
ବୃଥା ଭବ କଥାଭରୈରପି ଚ ନାଥ ନୀତଂ ବୟଃ ।
ତ୍ୱୟା ଯଦପି ହେଳୟା ମୟି ନ ଚେଦ୍ ବିଧେୟା ଦୟା
ତବୈବ ମହତୀ କ୍ଷତିଃ ପତିତପାବନସ୍ତ୍ୱଂ ଯତଃ ।



ଅନୁବାଦ – ହେ ଅନନ୍ତ ! ମୋର ପାପରାଶି ଏତେ ବେଶୀ ଯେ, ନିଖିଳ ଜଗତର ଦର୍ଶକଗଣ ମୋ' ଆଡକୁ ଦୃଷ୍ଟି ଦେଇ, ନିଜ ନିଜ ପାପ ସମ୍ବନ୍ଧରେ ଦୃଷ୍ଟି ଦେଉ ନାହାନ୍ତି । ପୃଥିବୀର ଲୋକମାନେ ପାପୀମାନଙ୍କ ମଧ୍ୟରେ ଅଗ୍ରଣୀ ବୋଲି ମୋତେ ଜାଣି, ମୋର ଜୟଜୟ ଗାନ କରୁଛନ୍ତି । ହେ ପ୍ରଭୋ, ତୁମେ ଯଦି ପ୍ରକୃତରେ ପତିତ ପାବନ, ତା'ହେଲେ ଏହି ପତିତାଧମକୁ ଉଦ୍ଧାର କର ।

ଯେପରି କୌଣସି ରାଜଚକ୍ରବର୍ତ୍ତୀ ବହୁ ସାମନ୍ତ ରାଜାଙ୍କୁ ରକ୍ଷା କରି ନିଜେ ସମ୍ରାଟ୍ ବୋଲାଇଥାଏ, ସେହିପରି ମୁଁ ବହୁ ପତିତଙ୍କୁ ନିଜର ବହୁବିଧ କୁକୃତ୍ୟ ଫଳରେ ରକ୍ଷା କରିଅଛି । ଜଗତର ଦୁଷ୍ଟମାନେ ମୋତେ ପତିତମାନଙ୍କ ଅଗ୍ରଗଣ୍ୟ ରୂପେ ସ୍ୱୀକାର କରୁଛନ୍ତି । ଯଦି ତୁମେ ମୋତେ ଉଦ୍ଧାର ନ କର, ତେବେ ତାହା ସେହି ଦୋଷର ଫଳ ବୋଲି ମୁଁ ଭାବିବି ନାହିଁକି ?

ହେ ପ୍ରଭୋ ! ମୁଁ କେବେ ହେଲେ ତୁମ ପାଦୋଦକ ପାନ କରି ନାହିଁ ଏବଂ ମୁଁ ସାଂସାରିକ ଜଞ୍ଜାଳରେ ବ୍ୟସ୍ତ ରହି ବୃଥାରେ ପୃଥିବୀର ଆୟୁଷ କ୍ଷୟ କରିଛି । ଏବେ ତୁମେ ଯଦି ଅବଜ୍ଞାରେ ମଧ୍ୟ ମୋ' ପ୍ରତି କୃପା ପ୍ରଦର୍ଶନ ନ କର, ତେବେ ତୁମରି ସୁନାମରେ କଳଙ୍କ ରହିବ; କାରଣ, ତୁମେ ପତିତପାବନ ।



Digitized by PPRACHIN, SOA

ଭବାନ୍ ପରମାଧାର୍ମିକଃ ପ୍ରକଟିତାତିକାରୁଣ୍ୟକଃ
ସ୍ୱତନ୍ତ୍ରଚରିତୋ ଯଦି ସ୍ୱୟମୟଞ୍ଚ କିଂ ନେଦୃଶଃ ।
ଅଳଂ କିମପି ଚେତ୍ ସ୍ୱକଂ ପତିତପାବନତ୍ୱାଦିକଂ
ପ୍ରଦର୍ଶୟତୁ ନାନ୍ୟଥା ଭବତୁ ତେ ଯଶଃ ସର୍ବଥା ।

ବଦନ୍ତି ଯଦି ପାବିତାଃ ପତିତପାବନତ୍ୱବ୍ରତଂ
ଭବନ୍ତମଧିକଂ ନ ତତ୍ ପରମଦୁର୍ବିନୀତୋ ପ୍ୟହମ୍
ପୁନାତୁ ନ ପୁନାତୁ ବା ଭୁବି ଯଥା ତଥୈବ ବ୍ରୁବେ
ଗୃହାଣ ଗୁଣମେବ ମେ କୁରୁ କୃପାଂ ନ ଦୋଷା ନ କେ ।

ହେ ପ୍ରଭୋ ! ତୁମେ ପରମଧର୍ମ ସଂରକ୍ଷକ ଏବଂ ତୁମର କରୁଣା ବହୁଭାବରେ ପ୍ରକଟିତ ହୋଇଛି । ତୁମେ ସ୍ୱାଧୀନ ସ୍ୱଭାବ ବିଶିଷ୍ଟ; ଏ' ଅଧମ ମଧ୍ୟ ସେହି ଧରଣର ସ୍ୱାଧୀନ ଚେତା ନୁହେଁକି ? ହେ କରୁଣାସାଗର ! ବର୍ତ୍ତମାନ ତୁମେ ତୁମର ପତିତପାବନ ଗୁଣକୁ ମୋ'ଠାରେ ପ୍ରଦର୍ଶନ କରିବାରେ ଟିକିଏ ହେଲେ କୃପଣ ହୁଅ ନାହିଁ । ତା' ଫଳରେ ତୁମର ପତିତପାବନ ଯଶରେ କଳଙ୍କ ରଚିବ ନାହିଁ ।

ଜଗତରେ ଯେଉଁମାନଙ୍କୁ ତୁମେ ପବିତ୍ର କରିଛ, ସେମାନେ ତୁମକୁ ପତିତପାବନ ବ୍ରତଧାରୀ ବୋଲି ସ୍ତୁତି କରିଥା'ନ୍ତି । ମୁଁ ଅତ୍ୟନ୍ତ ଦୁଷ୍ଟ; ତେଣୁ ସେତକ ମଧ୍ୟ ମୁଁ ତୁମ ଉଦ୍ଦେଶ୍ୟରେ କହୁନାହିଁ । ବର୍ତ୍ତମାନ ତୁମେ ମୋତେ ପବିତ୍ର କର ବା ନକର, ମୁଁ ପୃଥିବୀରେ ଏହା ପ୍ରକାଶ କରିବି । ତୁମେ ଗୁଣ ଗ୍ରହଣ କରି, ମୋ' ପ୍ରତି କୃପାଦୃଷ୍ଟି ଦିଅ । ଏ' ସଂସାରରେ କିଏ ବା ଦୋଷଯୁକ୍ତ ନୁହେଁ ?

---

ପତିତପାବନାଷ୍ଟକ ପଣ୍ଡିତରାଜ ଜଗନ୍ନାଥ, କବିସୂର୍ଯ୍ୟ କାଳୀଚରଣ ରଥ, ଓ କବିସୂର୍ଯ୍ୟ ବଳଦେବ ରଥଙ୍କ ରଚନା ବୋଲି ବିଦ୍ୱାନ୍ ମାନେ କହନ୍ତି । ଭକ୍ତ ପ୍ରବର ଶ୍ରୀମଦ୍ ହରିଦାସ ଏହା ଯବନ କବି ସାଲବେଗଙ୍କ ରଚନା ବୋଲି କହିଛନ୍ତି, ଗୌଡ଼ୀୟ ବୈଷ୍ଣବ, ସାହିତ୍ୟ' ପୁସ୍ତକରେ ହରିଦାସଙ୍କ ମତକୁ ସମର୍ଥନ କରାଯାଇଛି ।

ପ୍ରକୃତରେ ଲାଲବେଗଙ୍କ ପୁତ୍ର ସାଲବେଗ ବହୁଭାଷା ଅଧ୍ୟୟନ କରିଥିଲେ । ତାଙ୍କ ପ୍ରତି ସମାଜ ଯେଉଁ ଅବିଚାର କରିଥିଲା, ତା'ରି ପ୍ରତିବାଦର ଧ୍ୱନି' ବୋଲି କହିଲେ ଅସମୀଚୀନ ହେବ ନାହିଁ ।

ସାଲବେଗଙ୍କ ପିତାଥିଲେ-ଓଡିଶାର ସୁବେଦାର୍ ଲାଲବେଗ ବା ଜାହାଙ୍ଗିର କୁଲିଖାଁଙ୍କ ପୁତ୍ର, ତାଙ୍କ ମାତା ବ୍ରାହ୍ମଣୀ ଥିବାର କିମ୍ବଦନ୍ତୀ ରହିଛି । ସେ ଖ୍ରୀ:ଅ: ୧୬୦୮-୧୬୫୦ ସୁଦ୍ଧା ଓଡିଆ, ହିନ୍ଦୀ, ବଙ୍ଗଳା ଭାଷାରେ ପ୍ରାୟ ଦୁଇଶହ ଭଜନ ରଚନା କରିଥିଲେ । ତାଙ୍କ ଭଜନ ଗୁଡିକର ଆବେଗ 'ପତିତପାବନାଷ୍ଟକ'ରେ ପ୍ରତିଧ୍ୱନିତ ହୁଏ । ଏହା 'ପତିତପାବନ ଶତକ'ର ଏକ ଅଂଶ ବୋଲି କେତେକ ମତ ଦିଅନ୍ତି ।



Digitized by PPRACHIN, SOA

୭

## ଠାକୁର ଭଲେ ବିରାଜୋ

ଠାକୁର ଭଲେ ବିରାଜୋ ଜୀ ଓଡିସା ଜଗନ୍ନାଥ ପୁରୀ
ଭଲେ ବିରାଜୋ ଜୀ ବଲଭଦ୍ରଜୀ ତକ ଭୈୟା ।

କବ୍‌ସେ ଛୋଡୀ ମଥୁରାନଗରୀ କବ୍‌ସେ ଛୋଡୀ କାଶୀ
ଝାଡଖଣ୍ଡ ମେଁ ଆୟେ ବିରାଜୋ ବ୍ରିନ୍ଦାବନ କେ ବାସୀ ।

ସତ୍‌ଯୁଗ ଛୋଡୀ ମଥୁରାନଗରୀ ଦ୍ୱାପର ଛୋଡୀ କାଶୀ
କଲ୍‌ଯୁଗ ମେଁ ଆୟେ ବିରାଜୋ ବ୍ରିନ୍ଦାବନ୍ କେ ବାସୀ ।

ଉଡିୟା ମାଁଗେ କ୍ଷୀର ଖେଚଡୀ ବଙ୍ଗାଲୀ ମାଁ ଗେ ଭାତ୍
ଭକତ ମାଁ ଗେ ଦରଶନ ତେରୋ ଔର ମହାପରସାଦ୍ ।

x x x

ନୀଲଚକ୍ରପର ଧ୍ୱଜା ବିରାଜେ ମସ୍ତକ୍ ଶୋହେ ହୀରା
ଠାକୁର୍ ଆଗେ ଦାସ୍ ନାଚେ କହତ ଦାସ କବୀରା ।

(କବୀର ଭଜନ ସଂଗ୍ରହ)



---

କବିର ଦାସ ଖ୍ରୀ:ଅ:୧୩୯୮ ରେ ଜନ୍ମ ଗ୍ରହଣ କରିଥିଲେ । ସେ ମୁସଲମାନ ତନ୍ତୀ ପରିବାରରେ ଜନ୍ମଗ୍ରହଣ କରି, ରାମାନନ୍ଦଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ସେ ଲକ୍ଷାଧିକ ପଦ ରଚନା କରି, ପ୍ରାଚୀନ ହିନ୍ଦୀ ସାହିତ୍ୟକୁ ସମୃଦ୍ଧ କରିଥିଲେ । ପ୍ରସ୍ତୁତ କବିତାର ଭାଷା ଦୃଷ୍ଟିରୁ ଏହା କବୀରଙ୍କ ରଚନା ବୋଲି ଅନୁମାନ କରାଯାଏ । ପୁରୀ ସ୍ୱର୍ଗ ଦ୍ୱାରଠାରେ ଅଦ୍ୟାପି କବୀରଙ୍କ ସ୍ଥାପିତ ମଠ ରହିଛି ଏବଂ ଓଡିଶାରେ ଅନେକ କବୀରପନ୍ଥୀ ହିନ୍ଦୁ ଓ ମୁସଲମାନ ଅଛନ୍ତି ବୋଲି, ପୁରୀ କବୀର ମଠର ମହନ୍ତଙ୍କଠାରୁ ଜଣାଯାଏ ।



Digitized by PPRACHIN, SOA

୮

## ଜବ୍‌ତେ ମୋହି ଜଗନ୍ନାଥ

ଜବତେ ମୋହି ଜଗନ୍ନାଥ ଦୃଷ୍ଟିପରେ ମାଇଁ ।
ଅରୁଣଖମ୍ବ ଗରୁଡଖମ୍ବ ସିନ୍ଧୁ ପୌର ଝାଇଁ ।
ମନ୍ଦିର କୀ ଶୋଭା କଛୁ ବରଣୀ ନ ଜାଇ । ।
ମଙ୍ଗଲା କେ ଦରଶ ଦେଖ୍ ଆନନ୍ଦ ହୋ ଜାଇ ।
ଜୈ ଜୈ ଶ୍ରୀଜଗନ୍ନାଥ ସହୋଦର ବଲ୍‌ଭାଇ । ।
ଥାଲ୍ ଭୋଗ୍ ଲଗନେ କୀ ବିରିୟାଁ ଜବ୍ ଆଇ ।
ଉଖୁଡୀ ଔର ଦୁଧ ଭୋଗ ପ୍ରଭୁଜୀନେ ଖାଇ । ।
ମହାପ୍ରସାଦ ଭୋଗ ଖାତ ଆରତୀ ସଜାଇ ।
ଆପନେ ପ୍ରଭୁ ନାସିକା ପର୍ ମୋତିନ ଲଟକାଇ । ।
ବୀଚମେଁ ସୁଭଦ୍ରା ଶୋହେ ଦାହୀ ବଲ ସୋହାଇ ।
ବାୟେଁ ହାଥ ଲକ୍ଷ୍ମୀ ଛବି ବରଣୀ ହୁଁ ନ ଜାଇ । ।
ମାରକଣ୍ଡେୟ ବଟକ୍ରିଷ୍ଣ ରୋହିନୀ ସୁଖଦାଇ ।
ଇନ୍ଦ୍ରଦମନ ସ୍ନାନ କରତ ପାପ ସବ୍ ନସାଇ । ।
ମହୋଦଧି ଚକ୍ରତୀରଥ ଗଙ୍ଗା ଗତି ପାଇ ।
ମୀରା କେ ପ୍ରଭୁ ଜଗନ୍ନାଥ ଚରଣନ ବଲି ଜାଇ । ।

---

ମୀରାବାଈଙ୍କ ଜନ୍ମ ଖ୍ରୀ:ଅ: ୧୪୮୦ ରାଜସ୍ଥାନର ମେଢତା ଅନ୍ତର୍ଗତ କୁଡକୀ ଗ୍ରାମରେ ରତ୍ନସିଂହଙ୍କ ଗୃହରେ ହୋଇଥିଲା । ସେ ଚିତୌର୍‌ର ରାଣା ସଂଗ୍ରାମ ସିଂହଙ୍କ ଜ୍ୟେଷ୍ଠ ପୁତ୍ର ଭୋଜରାଜଙ୍କୁ ବିବାହ କରିଥିଲେ । ସେ ଆବାଲ୍ୟରୁ ଶ୍ରୀକୃଷ୍ଣଙ୍କୁ ନିଜର ପ୍ରେମିକ ଓ ପତି ରୂପେ ଗ୍ରହଣ କରିଥିଲେ ।

ମେରୋ ତୋ ଗିରିଧର ଗୋପାଲ୍ ଦୂସରା ନ କୋଇ ।
x x x x
ଜାକେ ସିର୍ ମୋର୍ ମୁକୁଟ ମେରୋ ପତି ସୋଇ

ମୀରାବାଈ ବହୁସଂଖ୍ୟକ ପଦାବଳୀ ରଚନା କରିଛନ୍ତି । ମୀରା ଭଜନମାଳାପୁସ୍ତକରୁ ତାଙ୍କ ରଚିତ ଜଗନ୍ନାଥଙ୍କ ଭଜନଟି ଡଃ ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ)ଙ୍କ ସୌଜନ୍ୟରୁ ପ୍ରାପ୍ତ ।



Digitized by PPRACHIN, SOA

## ୯

## ଆରତୀ ଶ୍ରୀଜଗନ୍ନାଥକୀ

ଆରତୀ ଶ୍ରୀଜଗନ୍ନାଥକୀ ମଙ୍ଗଲକାରୀ
ବରସତ୍ ଚରଣାରବିନ୍ଦ ଆପଦାହାରୀ ।।

ଘନନ୍ ଘନନ୍ ଘଣ୍ଟାବାଜେ ବେନ ବାଁସୁରୀ ।
ବାଜତ ମୃଦଙ୍ଗ ଢ଼ାଲ ନାଦ କୀନେ ହରି ।।

ଇନ୍ଦ୍ରଦବନ ସିନ୍ଧୁଗାଜେ ରୋହିନୀ ଖରି !
ମାରକଣ୍ଡ ସତଗଙ୍ଗା ଆନନ୍ଦ ଭରୀ ।।

କଞ୍ଚନ ମନି ଦୀପଦାନ୍ ଜୋତ ଜଗମଗୀ ତାରୀ ।
ଅଗର୍ ଧୂପ ନବଲ୍ ତେଲ୍ ବାତୀ ଘନସାରକୀ କରୀ ।।

ସୁରନରମୁନି ଦ୍ୱାର ଗାୱେ ବ୍ରହ୍ମାବେଦ ଉଚାରି ।
ଧନ୍ ଧନ୍ ହେ ସୁର ଧନ୍ ଆଜକୀ ଘରୀ ।।



---

କବି ସୁରଦାସ ଖ୍ରୀ: ଅ: ୧୪୮୩ରେ ଜନ୍ମଗ୍ରହଣ କରିଥିଲେ । କେତେକଙ୍କ ମତରେ ସେ ଜାତିରେ 'ରାଓ' ଓ ଅନ୍ୟ କେତେକଙ୍କ ମତରେ 'ବ୍ରାହ୍ମଣ' ଥିବାର ଜଣାଯାଏ । ସେ 'ସୁରସାଗର' ପ୍ରଭୃତି ବହୁ ଗ୍ରନ୍ଥର ଲେଖକ ସେ ଜନ୍ମାନ୍ଧ ଥିବାର ଜନଶ୍ରୁତିକୁ ହିନ୍ଦୀ ଜଗତର ବହୁ ଆଲୋଚକ ଅସ୍ୱୀକାର କରନ୍ତି । ପ୍ରସ୍ତୁତ ଜଗନ୍ନାଥଙ୍କ ଭଜନ ପାଠ କଲେ, ସେ ଅନ୍ଧଥିଲେ ବୋଲି ମନେ ହୁଏ ନାହିଁ । ଶ୍ରୀରାଧାକୃଷ୍ଣଙ୍କ ଲୀଳା ବର୍ଣ୍ଣନାରେ ସୁରଦାସ ଥିଲେ-ହିନ୍ଦୀ ଜଗତର ପ୍ରସିଦ୍ଧ କବି ।



Digitized by PPRACHIN, SOA



# ୧୦

## ଦେଖ୍ଓହ୍ ବଲଦେବ

ଦେଖ୍ ଓହ୍ ବଲଦେବ ତାଲ୍ଧ୍ୱଜ କାମପାଲ,
ଧବଲ ବରନ ଦୈତ୍ୟକାଲ ମନ୍ଦମନ୍ଦହାସୀ ।

କାଦମ୍ବରୀ ମଦିରମତ୍ତ,
ପ୍ରବଲ ଅମଲ ଘୂର୍ମିତ ନେତ୍ର,
ୟାକେ ନହିଁ ବୈରମିତ୍ର,
ବହତ କରୁଣାରାଶି ।।

ରେବତୀପତି କୁମୁଦଚନ୍ଦ,
ମଙ୍ଗଲମୟ ହରଷକନ୍ଦ,
ବୃନ୍ଦାରକବୃନ୍ଦ ବନ୍ଦ୍ୟ,
ସୁନ୍ଦର ନୀଲବାସୀ ।।

ଯାଚକେ ଅପବର୍ଗ ଚାରୀ,
ଦେଓତ ହଲମୁଷଲଧାରୀ,
ମାଁଗୋ ମାଁଗୋ ମେରୋ ପ୍ୟାରୀ,
ଜୈସେ ତୁ ଅଭିଳାଷୀ ।।

ନନ୍ଦିନିକେତନ ସ୍ୟନ୍ଦନ କେ ପର,
ବୈଠତ ଜୋ ଜଗନ୍ନାଥ ହେ ପ୍ୟାରେ ।
ବାଦଲ କାଲ କଲାମ୍ବୁଜ କାନ୍ତି
ସୁକାନ୍ତି କଲାମୁଖ ରାଜତ ଜାରେ ।।

ଚାରୁକଲାଧର ଚାନ୍ଦବରାବର
ଲାଲ ପ୍ରବାଲ ଜବାଧର ତାରେ ।
ଆପ ବିଶାଲ ଭୁଜ ଦୋଉ ତୋଲକେ
ଦୀନ କୋ ଜୋ ରାଖନେକୋ ପୁକାରୋ ।।



Digitized by PPRACHIN, SOA

ଓହ୍ର ଦେବୀ ସୁଭଦ୍ରା ଉଏ ଭକ୍ତ ଭଦ୍ରା
ସବ୍ ଲୋକମାତା ଭୱାନୀ ଦୟାର୍ଦ୍ରା ।
ବଲ୍ଲୀ ହେମଗୋରୀ ସଦାହେଁ କିଶୋରୀ
ସୁଭୋଗୀ ବିଲାସୀ ଅନାଶୀ ଅଛିଦ୍ରା ।।

ୟାକେ ପ଼ାସ୍ ମେଁ ବୈଠତ ଯୋ ଦେବ ସୁଦର୍ଶନ ସୋଇଁ
ଭରଦିଲ୍ ସବ୍ ଫଲ ଦେୱତ ହେଁ ମାଗେଁ ଜବ୍ ଯୋ କୋଇ ।
(ଗୁଣ୍ଡିଚା ବିଜେ)





Digitized by PPRACHIN, SOA



# ୧୧

## ଉତ୍ତର ପଶ୍ଚିମ ଆଡେ

ଉତ୍ତର-ପଶ୍ଚିମ ଆଡେ ମହୋଦଧି ତଟେ ।
ନୀଳକନ୍ଦର କଳପବଟ ପଛପଟେ ।।

ରତ୍ନସିଂହାସନ ପରେ ଅଛି ତୂଳୀଚକ ।
ସେ ଚକ ଉପରେ ବିଜେ ଜଗତ ନାୟକ ।।

ନବୀନ ନୀଳଜଳଦ ଜିଣି ଶ୍ୟାମବର୍ଣ୍ଣ ।
ମାଣିକ୍ୟବର୍ଣ୍ଣ ଅଧର ପଙ୍କଜ ନୟନ ।।

ମରକତ ଅଧରକୁ ସଞ୍ଚଦୀର୍ଘ ନାସା ।
ତହିଁ ମୋତିବର ମୁକ୍ତାବସା ତାର ମିଶା ।।

କୋଟିଚନ୍ଦ୍ରମାକୁ ଜିଣି ଶ୍ରୀମୁଖମଣ୍ଡଳ ।
ଶ୍ରବଣରେ ଶୋଭାପାଏ ମକରକୁଣ୍ଡଳ ।।

କମ୍ବୁକଣ୍ଠେ ଶୋଭାବନ ମୁକ୍ତା ରତ୍ନମାଳୀ ।
ହୀରା ନୀଳା ପଦକ ତୋ ହୃଦଦେଶେ ଲୁଳି ।।

ନାନା ମଣିରେ ଜଡିତ
ରତ୍ନ କଣ୍ଠିମାଳ ।
କି ଜିଣି ପୂର୍ଣ୍ଣ ଚନ୍ଦ୍ରମା
ଶ୍ରୀମୁଖ ମଣ୍ଡଳ ।।

ବାମେ ଯେ କମଳାଦେବୀ ଚକ୍ର ସୁଦର୍ଶନ ।
ଅଶେଷ ମହିମା ଦେବଦେବ ଜନାର୍ଦ୍ଦନ ।।



Digitized by PPRACHIN, SOA

ଦକ୍ଷିଣରେ ବଳଭଦ୍ର ସୁଭଦ୍ରା ମଧ୍ୟରେ ।
ନାମ କୀର୍ତ୍ତନ କରନ୍ତି ସକଳ ଅମରେ ।।

x x x x

ଗତି ମୁକ୍ତି ଦିଅ ମୋତେ ଶଙ୍ଖଚକ୍ରହସ୍ତ ।।
ଶୂଦ୍ରମୁନି ମୁଁ ସାରଳା ଦାସ ଚିନ୍ତେ ନିତ୍ୟ ।।

(ମହାଭାରତ-ମଧ୍ୟପର୍ବ)

---

ସାରଳା ଦାସ ଓଡିଶା ସାହିତ୍ୟ ଆଦିକବି ରୂପେ ପରିଚିତ । ପୂର୍ବତନ କଟକ ଜିଲ୍ଲାର ଝଙ୍କଡପୀଠ ନିକଟସ୍ଥ ବୃଷା ନଦୀତୀର ତେନ୍ତୁଳିପଦା ଗ୍ରାମରେ ତାଙ୍କର ଜନ୍ମ । ସେ ଗଜପତି କପିଳେନ୍ଦ୍ର ଦେବଙ୍କ ସମସାମୟିକ ଅର୍ଥାତ୍ ଖ୍ରୀ:ଅ: ପଞ୍ଚଦଶ ଶତାବ୍ଦୀର ମଧ୍ୟଭାଗରେ ମହାଭାରତ, ପଦ୍ମକାଣ୍ଡ ରାମାୟଣ, ବିଲଙ୍କା ରାମାୟଣ, ଚଣ୍ଡୀପୁରାଣ ଆଦି ପୁସ୍ତକ ରଚନା କରିଥିଲେ । ମହାଭାରତର ବହୁସ୍ଥଳରେ ସେ ଶ୍ରୀଜଗନ୍ନାଥଙ୍କୁ ସ୍ତୁତି କରିଛନ୍ତି ।





Digitized by PPRACHIN, SOA

# ୧୨

## ଜୟଜୟ ଜଗନ୍ନାଥ



ଜୟଜୟ ଜଗନ୍ନାଥ ଜଗତ କାରଣ ।
ଜୟ ନୀଳଗିରିବାସୀ ଭକତ ଜୀବନ ।।

ଭକତଙ୍କ ହିତେ ହସ୍ତେ ଚକ୍ର ଧର ସଦା ।
ତାଙ୍କର ଅଭୀଷ୍ଟ ପ୍ରଭୁ କରିଦିଅ ପଦା ।।

ତୁମ୍ଭେ କରୁଣା ନକଲେ ହେ କରୁଣାସିନ୍ଧୁ ।
ତରି ନ ପାରନ୍ତି ନରେ ଏହି ଭବବନ୍ଧୁ ।।

ଆହାପ୍ରଭୁ ଜଗନ୍ନାଥ ! କିଦୟା ଭକତେ ।
ସର୍ବଦା ଅନାଇ ଥାଅ ତାଙ୍କୁ କୃପା ନେତ୍ରେ ।।

ମୁଁ ତୁମ୍ଭ ପଦକିଙ୍କର ହେ ନୀଳାଦ୍ରି ନାଥ ।
ତୁମ୍ଭ ବିନୁ ଆଶ୍ରା କେହି ନାହିଁ ମୁଁ ଅର୍କ୍ଷିତ ।।

ସାରଳା ଦାସ ମୋ'ନାମ ତବ ଭାବ ଭାବି
ଭାରତ ରଚନା କରି ବୋଲାଉଛି କବି ।

(ମ: ଭା:ମୁଷଳୀପର୍ବ)



Digitized by PPRACHIN, SOA

## ୧୩

### ଜମ୍ବୁଦ୍ବୀପେ ଭୃତଖଣ୍ଡେ

ଜମ୍ବୁଦ୍ବୀପେ ଭୃତଖଣ୍ଡେ ଦକ୍ଷିଣ ଉଦଧି ।
ତୀର୍ଥ ନୀଳକଣ୍ଠବଟ ବଇକୁଣ୍ଠ ଭେଦି ।।

ମହାପର୍ବତ ସୁନ୍ଦର ନାମ ନୀଳଗିରି ।
ବ୍ରହ୍ମାଣ୍ଡ ମଧ୍ୟରେ ଯା'ର ଜ୍ୟୋସ୍ନା ଅଛି ପୂରି ।।

ଚାରିଲକ୍ଷ ଯେ ବତିଶସସ୍ର ବର୍ଷ କଳି ।
ତା' ଦର୍ପ ମର୍ଦ୍ଦିବ ବସିଅଛ ବନମାଳୀ ।।

ଶ୍ୱେତଗଙ୍ଗା ଅଟଇ ଯେ ରୋହିଣୀର କୁଣ୍ଡ ।
ଶ୍ରୀ ଯମେଶ୍ବର ଯେ ଲିଙ୍ଗ ଆବର ମାର୍କଣ୍ଡ ।।

ଗୁପତ ଗଙ୍ଗା ଅଟଇ ତୀର୍ଥ ବାରାଣାସୀ ।
କୋଟିଏ ତୀର୍ଥକୁ ଘେନି ପୁଷ୍କରହିଁ ଆସି ।।

ଶ୍ରୀରାମ କୃଷ୍ଣ ସୁଭଦ୍ରା ଦେବୀ ରୂପେ ବ୍ରହ୍ମା ।
ଦୋଷ ଉପେକ୍ଷି ଘେନନ୍ତି ଗୁଣ ମହାତମା ।।

ଶ୍ରୀଜଗନ୍ନାଥଙ୍କ ଶିରି ଚରଣେ ଦଇନି
କରିଅଛି ଶ୍ରୀସାରଳାଦାସ ଶୁଦ୍ରମୁନି ।

(ସାରଳା ମହାଭାରତ,ମଧ୍ୟପର୍ବ)





Digitized by PPRACHIN, SOA

# ୧୪

## ଦୀନବାନ୍ଧବ ହେ

ଦୀନବାନ୍ଧବ ହେ, ମୋ ଦୁଃଖ ନଗଲା ଯେ
ତୁମ୍ଭେ ଦୀନବନ୍ଧୁ ମୋତେ ପାଶୋରିଲେ ମୋ ବନ୍ଧୁ ହୋଇବ କିଏ ।।

ତୁଳସୀର ମାଳ ତୁଳସୀର ଚୂଳ ତୁଳସୀ ମଥାରେ ଦେଇ
ତୁଳସୀ ଚଉରା ମୂଳେ ଅନାଇଲେ ନୀଳଚକ୍ର ଦିଶୁଥାଇ ।୧ ।

ଚୂଳର ଉପରେ ସେବତୀର ଗଭା ଦେଖିଲେ ମାତଇ ଭୟେ
ଦୀନବନ୍ଧୁଠାରେ ବିପତ୍ତି ନଥାଇ ଯେଣେ ଯାଉଥିଲେ ଜୟେ ।୨ ।

ଦୀନବନ୍ଧୁ ବୋଲି ଯାହାଙ୍କୁ ବୋଲନ୍ତି ସେହିସେ ପରମ ଯୋଗୀ
ଯୋଗୀମାନଙ୍କର ଆତଙ୍କ ନାଶନ ଦୁଃଖିମାନଙ୍କର ଭୋଗୀ ।୩ ।

ଆଦି ଅନାଦିରେ ବନ୍ଧନ ପଡିଛି ମାୟା ମୋହଲାଗି ଧନ୍ଦ
ଶୂନ୍ୟ ପୁରୁଷ ଯେ ଶୂନ୍ୟରେ ଯାଉଛି କଏଁରୀ ପଡିବ ବନ୍ଦ ।୪ ।

ଏ ଭବସାଗରୁ ତରିବା ନିମନ୍ତେ ପଥର ବାନ୍ଧିଛି ଭେଳା
ତୁମ୍ଭେ ନରଖିଲେ ଭାସି ମୁଁ ଯାଉଛି ରଖ ରଖ ଚକାଡୋଳା ।୫ ।

ଭଗତ ଭାବରୁ ପ୍ରସନ୍ନ ହେବାରୁ ଭାବ ବିନୋଦିଆ ଯେଣୁ
ବଳରାମ ଦାସ ଅନ୍ନ ନମାଗଇ ମାଗଇ ଚରଣ ରେଣୁ ।୬ ।

---

ଓଡିଶାର ପ୍ରସିଦ୍ଧ ପଞ୍ଚସଖାଙ୍କ ମଧ୍ୟରେ ବଳରାମଦାସ ଥିଲେ ଅନ୍ୟତମ । ସେ ଗଜପତି ପ୍ରତାପରୁଦ୍ର ଦେବଙ୍କ ସମକାଳୀନ ଥିଲେ । ସେ ଶ୍ରୀଚୈତନ୍ୟଙ୍କ ଆଦେଶରେ ଅତିବଡୀ ଜଗନ୍ନାଥ ଦାସଙ୍କୁ ଦୀକ୍ଷା ଦେଇଥିଲେ । ତାଙ୍କ ଜନ୍ମ ସମୟ ୧୪୮୪ ମସିହା ଏବଂ ସେ ପ୍ରାୟ ଖ୍ରୀ:ଅ: ୧୫୫୦ ପର୍ଯ୍ୟନ୍ତ ଜୀବିତ ଥିଲେ । ତାଙ୍କ ଲେଖନୀରୁ 'ଜଗମୋହନରାମାୟଣ' ସମେତ ବହୁ ପୁସ୍ତକ ନିସୃତ ହୋଇଛି । ତାଙ୍କ ପିତାଙ୍କ ନାମ ଥିଲା-ସୋମନାଥ ମହାପାତ୍ର, ଓ ମାତାଙ୍କ ନାମ ପଦ୍ମାବତୀ ଦେବୀ ଥିବାର ଜଣାଯାଏ । କେତେକ ଆଲୋଚକଙ୍କ ମତରେ ତାଙ୍କ ମାତାଙ୍କ ନାମ ଜମ୍ବୁଦେବୀ, ଯମୁନାଦେବୀ ଓ ମହାମାୟା ଦେବୀ ଥିବାର ଜଣାଯାଏ । ସେ ପୁସ୍ତକଗୁଡିକ ବ୍ୟତୀତ ବହୁସଂଖ୍ୟକ ଭଜନ ଓ ଚଉପଦୀ ରଚନା କରିଥିବାର ଜଣାଯାଏ ।



Digitized by PPRACHIN, SOA

## ୧୪

# ଶ୍ରୀପୁରୁଷୋତ୍ତମ ଯିବା ମନ

ଶ୍ରୀପୁରୁଷୋତ୍ତମ ଯିବାମନ, ସାଙ୍ଗ ହୋଇଥିବା ପାଞ୍ଚଜଣ
ତୁନି ହୋଇଥିବା କେହି ନଜାଣିମେ ବସି ଭାଳୁଥିବା ମନେ ମନ
ପ୍ରଭୁ ପାଞ୍ଚଜଣ ।୧ ।

ଦାଣ୍ଡକୁ ଫିଟିଛି ସିଂହଦ୍ୱାର, ବାଇଶି ପାଉଛ ତଳ୍ୟକର
କଳ୍ପବଟ ମୂଳେ ଅନନ୍ତ ଶଯ୍ୟାରେ ମୁକ୍ତିମଣ୍ଡପ ବିମ୍ବାଧର
ପ୍ରଭୁ ଲୟ କର ।୨ ।

ସାଜିଣି ହୋଇଛି ତିନିରଥ, ପାଟ ପତନି ମଣ୍ଡନି ନେତ
ସୁବର୍ଣ୍ଣ କଳସ ଉପରେ ଚିରାଳ ଫରଫର ଉଡ଼େ ବାନା ନେତ
ପ୍ରଭୁ ତିନି ରଥ ।୩ ।

ଶରଧା ବାଲିକି ଶୋଭାବନ, ତାଳଧ୍ୱଜରେ କି ବଳରାମ
ରଙ୍ଗସଭାତଳେ କଂସକୁ ମାଇଲେ ରାମକୃଷ୍ଣ ଏହି ବେନିଜନ
ପ୍ରଭୁ ବଳରାମ ।୪ ।

ଏହି ଜଗନ୍ନାଥ ଗୋପପୁରେ, ବସ୍ତ୍ରା ରଖିଥିଲେ ନନ୍ଦ ଘରେ
କଂସର ଅଟକେ ଅଷ୍ଟମଲ୍ଲ ମାରି ଗିରି ଟେକିଅଛି ବାମକରେ
ପ୍ରଭୁ ଗୋପପୁରେ ।୫ ।

ଶ୍ରୀକୃଷ୍ଣ ଚରଣେ ଆଶ କରି, ହୃଦେ ବୋଲୁଥାଇ ହରିହରି
କହେ ଜଗନ୍ନାଥ ଚରଣେ ଶରଣ ଆଜ୍ଞା ହେଉ ପ୍ରଭୁ ନୀଳଗିରି
ପ୍ରଭୁ ଦେବହରି ।୬ ।

---

ଅତିବଡୀ ଜଗନ୍ନାଥ ଦାସ ଖ୍ରୀ:ଅ: ୧୪୮୭ ମସିହାରେ ପୁରୀ ନିକଟସ୍ଥ କପିଳେଶ୍ୱର ପୁରରେ ପୁରାଣପଣ୍ଡା ଭଗବାନ ଦାସ ଓ ପଦ୍ମାବତୀଙ୍କ କ୍ରୋଡ ମଣ୍ଡନ କରି ଜନ୍ମଗ୍ରହଣ କରିଥିଲେ । ସେ ଗଜପତି ପ୍ରତାପରୁଦ୍ରଦେବଙ୍କର ପ୍ରିୟପାତ୍ର ଥିଲେ । ଶ୍ରୀଚୈତନ୍ୟ ତାଙ୍କ ମୁଖରୁ ଶ୍ରୀମଦ୍ ଭାଗବତର ଅନୁବାଦ ଶୁଣି ତାଙ୍କୁ 'ଅତିବଡୀ' ଉପାଧିରେ ଭୂଷିତ କରିଥିଲେ । କବି ଜଗନ୍ନାଥଦାସ ଉଭୟ ସଂସ୍କୃତ ଓ ଓଡିଆରେ ବହୁପୁସ୍ତକ, ଭଜନ ଓ ଚଉପଦୀ ରଚନା କରିଛନ୍ତି । ସେ ଖ୍ରୀ:ଅ:୧୫୭୦ ପର୍ଯ୍ୟନ୍ତ ଜୀବିତ ଥିବାର ଅନୁମାନ କରାଯାଏ ।



Digitized by PPRACHIN, SOA

୧୬

## ଦୀନବନ୍ଧୁ ମୋ'ଦୁଃଖ ନଗଲା ଯେ

ଦୀନବନ୍ଧୁ ମୋ ଦୁଃଖ ନଗଲା ଯେ ।
ତୁମ୍ଭେ ଦୀନବନ୍ଧୁ ମୋ ବନ୍ଧୁ ନୋହିଲେ,
ମୋ ବନ୍ଧୁ ହୋଇବ କେ ? ।ଘୋଷା ।
ଦୀନବନ୍ଧୁ ବୋଲି ଯାହାକୁ କହନ୍ତି ସେହିତ ପରମ ଯୋଗୀ ।
ଦୁଃଖୀ ଲୋକଙ୍କର ଦୁଃଖ ନିବାରଣ ସୁଖୀ ଲୋକଙ୍କର ଭୋଗୀ ।।
ଅତି ଆରତରେ ମୃଗୁଣୀ ଡାକିଲା,
ଇନ୍ଦ୍ରକୁ ପେଷିଲ ହରି ।
ମୃଗଣୀ ଆରତ ଫେଡି ଜଗନ୍ନାଥ,
ତାହାର ମାନ ଉଦ୍ଧାରି ।।
ତୁଳସୀର ଜଟ ତୁଳସୀ ମୁକୁଟ ତୁଳସୀ ଭୂଷଣ ହୋଇ ।
ତୁଳସୀ ଚଉରା ପାଶେ ଅନାଇଲେ ନୀଳଚକ୍ର ଦିଶୁଥାଇ ।।
ଅବନୀର ଭାର ସଙ୍କଟ ପଡିଲା,
ପଥରକୁ କଲ ଭେଳା ।
ଅଥଳ ସମୁଦ୍ରେ ମୋ ଭେଳା ଭାସୁଛି,
ପାରିକର ଚକାଡୋଳା ।।
ସମୁଦ୍ରତଟରେ ପକ୍ଷୀ ଅଣ୍ଡା ଦେଲା ଡିମ୍ବ ନେଲା ରତ୍ନାକର ।
ଷଷ୍ଠଡିମ୍ବ ତାର ଜଳରେ ଭାସିଲା ପାରି କଲ ଚକ୍ରଧର ।।
ଚକ୍ଷୁକୁ ଯେସନ ପିଛଡା ଆବୋରି,
ଭକ୍ତକୁ ତେହ୍ନେ ଗୋସାଇଁ ।
ଦୀନ ଅଚ୍ୟୁତ ଯେ ଭାବରେ ଭଣିଲେ,
ପ୍ରଭୁପଦ ଚିତ୍ତେ ଧ୍ୟାୟି ।।

---

ପଞ୍ଚସଖାଙ୍କ ମଧ୍ୟରେ ଅନ୍ୟତମ କବି ଅଚ୍ୟୁତାନନ୍ଦ ଦାସ ପୂର୍ବତନ କଟକଜିଲ୍ଲାର ଚିତ୍ରୋତ୍ପଳା ନଦୀ ତୀରବର୍ତ୍ତୀ ନେମାଳ ଗ୍ରାମ ନିକଟସ୍ଥ ତିଳକଣା ଗ୍ରାମରେ ଖ୍ରୀ:ଅ: ୧୪୮୨ ମାଘ ଶୁକ୍ଳ ଏକାଦଶୀରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାମାତାଙ୍କ ନାମ ଯଥାକ୍ରମେ ଦୀନବନ୍ଧୁ ଖୁଣ୍ଟିଆ ଓ ପଦ୍ମାବତୀ ଥିଲା । ସେ ଶତାଧିକ ଓଡ଼ିଆ ପୁସ୍ତକର ରଚୟିତା ଭାବେ ପ୍ରସିଦ୍ଧି ଅର୍ଜନ କରିଛନ୍ତି । ସେ ମଧ୍ୟ ଶହଶହ ଭଜନ ଓ ଚଉପଦୀର ପ୍ରଣେତା ରୂପେ ପରିଚିତ । ତାଙ୍କ ରଚିତ 'ଭାଗବତ ଲହରୀ ହରିବଂଶ', ଶୂନ୍ୟସଂହିତା, ମାଳିକା, ଗୋପାଳଙ୍କ ଓଗାଳ ଆଦି ଜନସମାଜରେ ସୁପରିଚିତ ।



Digitized by PPRACHIN, SOA

# ୧୭

## ଚକାନୟନ ହେ



ଚକା ନୟନ ହେ ! ଜଗୁଜୀବନ ଶ୍ରୀହରି
କାତରେ ଜଣାଣ କରୁଛି ଛାମୁରେ
ଶୁଣ ପ୍ରଭୁ ! ଶ୍ରୁତି ଡେରି ।ଘୋଷା ।
କେତେ ସଙ୍କଟୁ କାହାକୁ ରଖି ନାହଁ
ଦୟାଳୁ ସାରଙ୍ଗଧାରି !
ତା ବର୍ଣ୍ଣି ବସିଲେ ପୋଥିକର ପାଠ
କି ବର୍ଣ୍ଣିବ ଏ ପାମରୀ ।୧।
ଅହଲ୍ୟା ତାରଣ ଦ୍ରୌପଦୀ କଷଣ
ହେଳେ ଦେଇଛ ନିବାରି
ମୃଗୁଣୀ ଆରତ ଜାଣି ଜଗନ୍ନାଥ
ବିପଦୁ ଦେଲ ଉଦ୍ଧାରି ।୨।
ଶବରୀକି ଦିବ୍ୟ ଗତି ଯାଚି ଦେଲ
ତା' ଉଚ୍ଛିଷ୍ଟ ଭକ୍ଷି କରି
ମୀରା କରମାଙ୍କ ଭାବେ ହୋଇ ରଙ୍କ
ସ୍ଥାନ ଦେଲ ବ୍ରଜପୁରୀ ।୩।
ଜୀବନ୍ତୀ ପିଙ୍ଗଳା ଆଦି ବାରବଳା
ସଂସାରୁ ଗଲେ ନିସ୍ତରି
ଅପାର ମହିମା କେତନ ଉଡାଇ
ରଖିଛ କୀରତି ଶିରୀ ।୪।
ମୁଁ ଛାର ନିର୍ମାଖୀ ତୁମ୍ଭର ସେବକୀ
ପଣକୁ ଅଯୋଗ୍ୟ ନାରୀ
କରୁଛି ଦଇନି ଯୋଡି କର ବେନି
ଶୁଣ ମାଧବୀ ଗୁହାରି ।୫।

---

ମାଧବୀ ଦାସୀ ଥିଲେ-ଶ୍ରୀଚୈତନ୍ୟଙ୍କ ସମସାମୟିକା ଭକ୍ତକବି । ସେ ଶିଖି ମହାନ୍ତିଙ୍କ ଭଗ୍ନି ଥିଲେ ଏବଂ ପଞ୍ଚସଖା ତଥା ରାୟରାମାନନ୍ଦ ପଟ୍ଟନାୟକଙ୍କ ସମ୍ପର୍କରେ ଆସି ନିଜ ଭକ୍ତିପୂତ ଜୀବନ ଯାପନ କରୁଥିଲେ । ମାଧବୀ ଦାସୀ ଥିଲେ ଓଡିଶାର ପ୍ରଥମ ନାରୀ କବି । ପ୍ରସ୍ତୁତ ଭଜନଟି ରଚନା କରି ସେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଭକ୍ତିପୂତ ଅର୍ଘ୍ୟ ପ୍ରଦାନ କରିଥିଲେ ।



Digitized by PPRACHIN, SOA

## ୧୮




### ଶୁଣହେ ରସିକ ଜନେ

ଶୁଣ ହେ ରସିକଜନମାନେ
ଦକ୍ଷିଣଜଳଧି କୂଳେ ।
କ୍ଷେତ୍ରବର ନୀଳଗିରି ନବରରୁ
ଗୁଣ୍ଡିଚା ବିଜୟ କଲେ ।।

ବିବିଧ ତଡ଼ାଉ ଲାଗି ହୋଇ ପ୍ରଭୁ
ବାମେ ବୀରବର ଛୁରୀ ।
ନନ୍ଦିଘୋଷ ରହୁବରେ ଆରୋହିଣ
ଭୁଜେ ଶଙ୍ଖ ଚକ୍ରଧରି ।।

ସକଳ ଦେବତା ପଛେ ପଟୁଆରୀ
କୁସୁମ ବରଷେ ରହୁବରେ ।
ମହେଶ କେଶବ ବେନିଙ୍କ ଛାମୁରେ
କର ସେ ଯୋଡନ୍ତି ଶିରେ ।।

କମଳିନୀଙ୍କି ପ୍ରସନ୍ନ କରାଇଣ
ସିଂହାସନେ ପୀତବାସ ।
ଦେବତାଙ୍କ ପଛେ ପାୟେ ପଡ଼ି ଶୋଇ
ବାହୁଡେ ଅର୍ଜୁନ ଦାସ ।।

---

କବି ଅର୍ଜୁନଦାସ ଖ୍ରୀ:ଅ: ୧୫୨୦-୩୦ ମଧ୍ୟରେ ଆବିର୍ଭୂତ ହୋଇ 'ରାମବିଭା' ଓ 'କଳ୍ପଲତା' ଶୀର୍ଷକ ଦୁଇଖଣ୍ଡି କାବ୍ୟ ରଚନା କରିଥିଲେ । ସେ ଥିଲେ-ଓଡିଆ ଛନ୍ଦୋବଦ୍ଧ କବିତାର ଜନକ । ପ୍ରସ୍ତୁତ କବିତା ଓ ପରବର୍ତ୍ତି କବିତା ତାଙ୍କ ଲିଖିତ କଳ୍ପଲତା କାବ୍ୟରୁ ଗୃହୀତ ହୋଇଛି । ପ୍ରଥମ ପଦ୍ୟାଂଶଟି ଶ୍ରୀଜଗନ୍ନାଥଙ୍କ 'ରଥଯାତ୍ରା ବର୍ଣ୍ଣନା' ଓ ଦ୍ୱିତୀୟ ପଦ୍ୟାଂଶଟି 'ଚନ୍ଦନଯାତ୍ରା ବର୍ଣ୍ଣନା' । ସେ ଖୁବ୍ ସମ୍ଭବତଃ ଶ୍ରୀକ୍ଷେତ୍ରର ଅଧିବାସୀ ଥିଲେ । ସେଇଥିପାଇଁ ତାଙ୍କ ରଚନାରେ ଶ୍ରୀଜଗନ୍ନାଥଙ୍କ ଯାତ୍ରାବର୍ଣ୍ଣନା ମନୋଜ୍ଞ ଢଙ୍ଗରେ କରାଯାଇଛି ।

ଜଳଧି-ସମୁଦ୍ର, ତଡାଉ-ଅଳଙ୍କାର, ରହୁବର-ରଥ, କମଳିନୀ-ଲକ୍ଷ୍ମୀ ।



Digitized by PPRACHIN, SOA

# ୧୯

## ବୈଶାଖ ଶୁକଳତିଥି



ବୈଶାଖ ଶୁକଳତିଥି ତୃତୀୟା ବୋଲି ବିଖ୍ୟାତି
ନୀଳଗିରି ନୃପବର ଦେବନ୍ତ ଘେନି ।
ସକଳ ସନାଥ ଶିବ ମିଳି ଚନ୍ଦନ ଉତ୍ସବ
ଆପଣେ ଅଛନ୍ତି ସଙ୍ଗେ ଜଳଜାସନୀ ।
ସାତଘଡି ହୋଇଲା ବେଳ,
ଚନ୍ଦନ ଗୋଳନ୍ତି ମନ୍ଦାକିନୀର ଜଳ ।।
କର୍ପୂର ଗନ୍ଧ କସ୍ତୁରୀ ଅଗରୁ ପନିର ଭରି
ସୁବର୍ଣ୍ଣ ଖୁରୀଏ ଲାଇ ତିନି ଠାବେଣ ।
ସିଂହାସନ ତଳେ ନେଇ ମୁଦିରଥ ହାତେ ଦେଇ
ଶ୍ରୀଜଗନ୍ନାଥଙ୍କୁ ଲାଗିକଲେ ବେଗେଣ ।
ବାଜିଲାକ ଯାତ୍ରା-ମହୁରୀ,
ଶିରେ କର ଦେଇ ଦେବେ ସ୍ତୁତି ଫୁକାରି ।।
x x x x x x
ପୁଣି ଶଙ୍ଖଚକ୍ରକର ମଣ୍ଡିଲ ଶ୍ରୀଭୁଜ ଉର
ତ୍ରିମୁଣ୍ଡିଠାବରୁ ଶିରିପୟର ଯାଏ ।
ଫୁଲର କରପଲ୍ଲବ ଦେଖି କେ ଦେହ ଧରିବ
ଫୁଲର ମୁକୁଟ ଫୁଲ କର୍ଣ୍ଣାଟ ଶୋହେ ।
ସ୍ୱୟଂ ପରଂବ୍ରହ୍ମ ବିଜୟେ,
ସୁରନର ମୁନିମାନେ କରନ୍ତି ଲୟେ ।।
ମଣ୍ଡିଲେ ରତ୍ନବିମାନ ବିଜୟ ଜଗମୋହନ
ଆଗେ ଅପଛରାମାନେ କରନ୍ତି ନୃତ୍ୟ ।
ସରୋବର କୂଳେ ବିଜେ ଟମକ ନିଶାଣ ବାଜେ
ଚାପ ଆସି ତରାଇ ଯେ କଲା ତୁରିତ ।
ଜଳକେଳି କରନ୍ତି ନାବେ,
ଅରଜୁନ କେରୁଆଳ ଧରଇ ଭାବେ ।

---

ଦେବନ୍ତ-ଦେବତାମାନଙ୍କୁ, ମନ୍ଦାକିନୀ-ଗଙ୍ଗା, ମୁଦିରଥ-ମୁଦ୍ରାହସ୍ତ ନାମକ ଶ୍ରୀଜଗନ୍ନାଥଙ୍କର ଅନ୍ୟତମ ସେବକ । ଲାଗି-ପିନ୍ଧାଇ, କେରୁଆଳ-କାତ ବା ଆହୁଲା ।



Digitized by PPRACHIN, SOA



## ଆହେ ନୀଳ ଶଇଳ

ଆହେ ନୀଳ ଶଇଳ ପ୍ରବଳ-ମତ୍ତ-ବାରଣ !
ମୋ ଆରତ-ନଳିନୀ ବନକୁ କର ଦଳନ ।

ଗଜରାଜ ଚିନ୍ତାକଲା ଥାଇ ଘୋର ଜଳେଣ
ଚକ୍ର ପେଷି ଗ୍ରାହ ନାଶି ଉଦ୍ଧାରିଲ ଆପଣ ।୧।

ଘୋର ବନେ ମୃଗୁଣୀକି ପଡିଥିଲା କଷଣ
ଏତେ ବଡ ବିପତ୍ତିରୁ କରିଅଛ ତାରଣ ।୨।

କୁରୁସଭା ତଳେ ଶୁଣି ଦ୍ରୌପଦୀର ଜଣାଣ
କୋଟିବସ୍ତ୍ର ଦେଇ ହେଳେ ଲଜ୍ଜ୍ୟାକଲ ବାରଣ ।୩।

ରାବଣର ଭାଇ ବିଭୀଷଣ ଗଲା ଶରଣ
ଶରଣ ସମ୍ଭାଳି ତାକୁ ଲଙ୍କେ କଲ ରାଜନ ।୪।

ପ୍ରହ୍ଲାଦ-ପିତା ସେ ଯେ ବଡ ଦୁଷ୍ଟ ଦାରୁଣ
ସ୍ତମ୍ଭରୁ ବାହାରି ତାକୁ ବିଦାରିଲ ତକ୍ଷଣ ।୫।

କହେ ସାଲବେଗ ହୀନ ଜାତିରେ ମୁଁ ଯବନ
ଶ୍ରୀରଙ୍ଗାଚରଣ ତଳେ କରୁଅଛି ଜଣାଣ ।୬।

---

ଯବନକବି ସାଲବେଗ ଥିଲେ ବ୍ରାହ୍ମଣୀମାତା ଓ ମୋଗଲ ସୁବାଦାର ଜାହାଙ୍ଗିର କୁଲିଖାଁ ବା ଲାଲବେଗଙ୍କ ଔରସଜାତ ସନ୍ତାନ । ସେ ଖ୍ରୀ: ଅ: ୧୬୦୮ରେ ଜନ୍ମଗ୍ରହଣ କରିଥିଲେ । ସେ ମାତାଙ୍କ ଉପଦେଶରେ ଶ୍ରୀକୃଷ୍ଣରୂପୀ ଜଗନ୍ନାଥଙ୍କ ଉପାସନାରୁ ଅସାଧ୍ୟ ରୋଗରୁ ମୁକ୍ତ ହୋଇ, ଶେଷରେ ଶ୍ରୀଜଗନ୍ନାଥଙ୍କ ପରମଭକ୍ତ ରୂପେ ପରିଚିତ ହୋଇଥିଲେ । ସେ ସଂସ୍କୃତ, ଓଡିଆ, ବଙ୍ଗଳା ଓ ହିନ୍ଦୀଭାଷାରେ ଭଜନ, ଚଉପଦୀ ଆଦି ରଚନା କରିଛନ୍ତି । ସେ ଖୁବ୍ ସମ୍ଭବତଃ ଖ୍ରୀ: ଅ: ୧୬୫୦ ପର୍ଯ୍ୟନ୍ତ ଜୀବିତଥିଲେ ।

ନୀଳଶଇଳ-ନୀଳଗିରି, ଶ୍ରୀକ୍ଷେତ୍ର, ମତ୍ତବାରଣ-ପାଗଳାହାତୀ
ନଳିନୀବନ-ପଦ୍ମବନ, ରଙ୍ଗାଚରଣ-ଶ୍ରୀଜଗନ୍ନାଥ ।



Digitized by PPRACHIN, SOA

# ୨୧

## ଅଣସର ଘରୁ ଆଜ



ଅଣସର ଘରୁ ଆଜ ବାହାର ହେଲ,
ତ୍ରିଭଙ୍ଗି କରି ଚାହୁଁଛ ।
ଗୁଣନିଧି ମୋ କେଣିକି ଯାଉଛ
ଯାଉଛ, ପହଣ୍ଡେ ରହୁଛ ।୧।

ଶ୍ରୀଭୁଜେ ଭୁଜ ପେଲି ମତ୍ତଗଜ ପ୍ରାୟେ ଝୁଲି
ମହାପାତକମାନଙ୍କୁ ଦହୁଛ ।୨।

ମୃଦୁ ମଧୁରହାସ ଅଧରେ ଜଗଦୀଶ
ତିନିପୁରକୁ ଯାଚି ଦେଉଛ ।୩।

ଅତି ମୋହନ ବେଶ ଧରି ନୀଳାଦ୍ରି ବାସ
ଚାହିଁ ତିନିପୁରକୁ ତାରୁଛ ।୪।

କହେ ସାଲେବେଗ ହୀନ ଏ ତ ଜଗମୋହନ
ଜଗମୋହନ ରୂପ ଧରିଛ ।୫।

---

ଅଣସର–ଅନବସର, ସ୍ନାନପୂର୍ଣ୍ଣିମା ପରଦିନଠାରୁ ଶ୍ରୀଜଗନ୍ନାଥାଦି ଚତୁର୍ଦ୍ଧାମୂର୍ତ୍ତି ଗୋଟିଏ ସ୍ୱତନ୍ତ୍ର ଘରେ ରହନ୍ତି । ତାହାକୁ 'ଅଣସରଘର' ବୋଲି କୁହାଯାଏ । ସେତିକି ବେଳେ ପ୍ରଭୁଙ୍କ ଦେହରେ ରଙ୍ଗଲାଗି କରାଯାଏ । ସେହି ସମୟରେ ଶ୍ରୀଜଗନ୍ନାଥ ରୋଗଶଯ୍ୟାରେ ପଡିଥିବାର ସେବକ ଓ ଭକ୍ତମାନଙ୍କ ଧାରଣା ।



Digitized by PPRACHIN, SOA

## ୨୨

## ଆହେ ନୀଳଗିରି



ଆହେ ନୀଳଗିରି !
ତୁମ୍ଭ ଶ୍ରୀଭୁଜେ ଦୟଣା କେରି କେରି ॥
ତୁଳସୀ ଚଉରା ପାଶେ ଜଗି, ବସି ଧ୍ୟାଉଛନ୍ତି କେତେ ଯୋଗୀ
ବ୍ୟାଘ୍ର ଚର୍ମପାତି ସ୍ତୁତି କରୁଛନ୍ତି
ଜପୁଛନ୍ତି ନାମ ସଂଖ୍ୟା କରି ।୧ ।
ବଡଦାଣ୍ଡ ଦେଖି ହେଲି ତୋଷ, ରେଣୁମାତ୍ର ତେଣୁ କଲି ଗ୍ରାସ
କ୍ଷିରୀ ଖେଚେଡିରେ ମନ ନ ବୋଧଇ
ଟଙ୍କ ତୋରାଣିରେ ମନ ତୋଷ ।୨ ।
ସିଂହଦ୍ୱାରେ ବାଜେ ବେତବାଡି, ବାଜନ୍ତେ ପାତକ ଯାଏ ଛାଡି
ଶ୍ରୀଜଗନ୍ନାଥଙ୍କ ଦର୍ଶନ ନିମନ୍ତେ
ଏକକୁ ଆରେକ ହୁଡା ହୁଡି ।୩ ।
ବାଇଶି ପାବଛେ ଗଲି ସୁଖେ, କୈବଲ୍ୟ ପସରା ବେନି ପାଖେ
ଚଣ୍ଡାଳୁ ବ୍ରାହ୍ମଣ ଶୁଦ୍ର ପରିଯନ୍ତେ
କୈବଲ୍ୟ ଭୁଞ୍ଜନ୍ତି ସୁଖେ ମୁଖେ ।୪ ।
ରୋହିଣୀ ପାଦୁକ କୁଣ୍ଡରଜ, ସିଂହ ମାଡି ବସିଅଛି ଗଜ
ସତେ କି ଏ ନେତ୍ର ସଫଳ ହୋଇବ
କାକ ପଡି ହେଲା ଚତୁର୍ଭୁଜ ।୫ ।
ଗରୁଡ ପଛରେ ରହି ଦେଖ-କି ଶୋଭା ପାଉଛି ପଦ୍ମମୁଖ
ହୀରା ନୀଳା ମୋତି ମାଣିକ୍ୟ ଜଳୁଛି
ହୃଦେ ଲମ୍ବିଅଛି ବ୍ୟାଘ୍ରନଖ ।୬ ।
ଶ୍ରୀଜଗନ୍ନାଥଙ୍କ ଠାକୁରାଣୀ ସୁବର୍ଣ୍ଣଥାଳିରେ ଅର୍ଘ୍ୟ ଆଣି
କଳା ଶ୍ରୀମୁଖକୁ ବନ୍ଦାଣ କରନ୍ତି
ସାଧୁ ସନ୍ଥ ଦ୍ୟନ୍ତି ହରିଧ୍ୱନି ।୭ ।
କହେ ସାଲବେଗ ହୀନ ଜାତି ଶ୍ରୀରଙ୍ଗାଚରଣେ ରହୁ ମତି
ଶ୍ରୀଜଗନ୍ନାଥଙ୍କୁ ଜଣାଣ କରୁଛି
ଦୟାକର ବାରେ ଲକ୍ଷ୍ମୀପତି ।୮ ।



Digitized by PPRACHIN, SOA

## ୨୩

### ଚାଲ ସଖି ଆମ୍ଭେ



ଚାଲ ସଖି ଆମ୍ଭେ ଦର୍ଶନ କରିବା ନୀଳଗିରି କାଳିଆକୁ
କେଉଁ ସୁରପତି ବେଶ କରିଅଛି ଗିରିବରତୋଳିଆକୁ ।
ସେ ଯେ, ଶ୍ରୀମୁଖ ତୋରା,
ଶିରେ ସୁନା ଦୂବ କେରା କେରା ।୧।

ଶ୍ୱେତପଦ୍ମଆଖ ଦେଖିଲେ ଗୋ ସଖି ଚିତ୍ତ କି ବାହୁଡ଼େ ଆଉ
କର୍ଣ୍ଣର କୁଣ୍ଡଳ ଦିଶେ ଝଳମଳ କଉସ୍ତୁଭ ଦାଉ ଦାଉ
ସେ ଯେ ହିଆ ବିଶାଳ
ମିଶାମିଶି ବାରାନିଧି ଫଳ ।୨।

ଶଙ୍ଖ ଚକ୍ର ଗଦା ପଦ୍ମ ମହାପ୍ରଭୁ ଧରିଛନ୍ତି ଆଣ୍ଟକରି
ଦୁଃସହ ଦୁର୍ଗତି ଗ୍ରହପୀଡାମାନେ ଆଉ କି ପଶିବେ ଡରି
ସେ ଯେ ଦୟାସାଗର,
ଭବସାଗରୁ କରିବେ ପାର
ତାଙ୍କ ପଦ୍ମପାଦେ ଲୟକର ।୩।

ଶ୍ରୀପୁରୁଷୋତ୍ତମ ରହଣି କରିବା ଖାଇବା ଛଡା ତୁଳସୀ
କହେ ସାଲବେଗ ସିଂହଦ୍ୱାରଠାରେ ହୋଇଥିବା କ୍ଷେତ୍ରବାସୀ
ସେ ଯେ ଆରତତ୍ରାଣ,
କାଳଗଜକୁ ସିଂହ ପ୍ରାୟେଣ,
ଚାଲ ଚାଲ ପଶିବା ଶରଣ ।୪।

---

ସୁରପତି-ଇନ୍ଦ୍ର, ଗିରିବରତୋଳିଆ-ଶ୍ରୀକୃଷ୍ଣ ଅବତାରରେ ପ୍ରଭୁ ଗୋପ, ଗୋପୀ ଓ ଗୋକୁଳ ରକ୍ଷା ଲାଗି ପର୍ବତ ଶ୍ରେଷ୍ଠ ଗୋବର୍ଦ୍ଧନକୁ ଛତ୍ର ପରି ଧାରଣ କରିଥିଲେ । କାଳଗଜ-କାଳ ରୂପକ ଯମକୁ ଏଠାରେ କବି ହସ୍ତୀ ସହିତ ତୁଳନା କରି, ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ସିଂହ ରୂପେ କଳ୍ପନା କରିଛନ୍ତି ।



Digitized by PPRACHIN, SOA

## ୨୪

### ଜଗବନ୍ଧୁ ହେ ଗୋସାଇଁ

ଜଗବନ୍ଧୁ ହେ ଗୋସାଇଁ !
ତୁମ୍ଭ ଶ୍ରୀଚରଣ ବିନୁ ଅନ୍ୟ ଆଶ୍ରେ ନାହିଁ ।
ସାତଶ ପଞ୍ଚାଶ କୋଶ ଚାଲି ନ ପାରଇ
ମୋହ ଯିବାଯାଏ ନନ୍ଦିଘୋଷେ ଥିବ ରହି ।୧।

ରଥ ଚାରିପାଶେ ଲମ୍ବେ ମୁକୁତାର ଝରା
ଝଲମଲ ଦିଶୁଥାଇ ପ୍ରଭୁ ଚକାଡୋଳା ।୨।

ବାଇଶି ପାବଚ୍ଛ ତଳେ ବିକା ହୁଏ ଭାତ
ଦର୍ଶନ ତେଣିକି ଆଉ କୈବଲ୍ୟ ମୁକତ ।୩।

ଆଗେ ଚାଲେ ବଳଭଦ୍ର ମଧ୍ୟେ ଚାନ୍ଦମୁହାଁ
ପଛେ ଆସଇ କାଳିଆ ଗହଳ ଲଗାଇ ।୪।

କହେ ସାଲବେଗ ହୀନ ଜାତିରେ ଯବନ
ଏହି ମୋତେ ଆଜ୍ଞା ହେବ ଶିରୀ ବୃନ୍ଦାବନ ।୫।

---

ଏହି ଭଜନ ସମ୍ବନ୍ଧରେ ଗୋଟିଏ କିମ୍ବଦନ୍ତୀ ପ୍ରଚଳିତ ରହିଛି । ଥରେ ରଥଯାତ୍ରା ପୂର୍ବରୁ ଭକ୍ତ ସାଲବେଗ ବୃନ୍ଦାବନ ଯାତ୍ରା କରିଥିଲେ । ରଥଯାତ୍ରା ଦେଖିବା ପାଇଁ ସେ ବ୍ୟଗ୍ର ହୋଇ ଆସିବା ସମୟରେ ପଥ ମଧ୍ୟରେ ଅସୁସ୍ଥ ହୋଇ ପଡିଲେ । ସେ ସେହି ଅବସ୍ଥାରେ ରହି ପ୍ରଭୁଙ୍କୁ 'ମୋହ ଯିବାଯାଏଁ ନନ୍ଦିଘୋଷେ ଥିବ ରହି' ବୋଲି ଆକୁଳ ପ୍ରାର୍ଥନା କରିବାରୁ ନନ୍ଦିଘୋଷ ରଥ ବଳଗଣ୍ଡିଠାରେ ଅଟକିରହିଲା । ଯେତେ ଚେଷ୍ଟା କଲେ ମଧ୍ୟ ରଥ ଚାଲିଲା ନାହିଁ । କେତେଦିନ ପରେ ସାଲବେଗ ଆସି ରଥରେ ପ୍ରଭୁଙ୍କୁ ଦର୍ଶନ କରିବା ପରେ, ନନ୍ଦିଘୋଷ ଚାଲିଲା । ପ୍ରଭୁଙ୍କ ସ୍ୱତନ୍ତ୍ର ଅନୁଗ୍ରହ ଲାଭ କରି, ସାଲବେଗ ସେହିଠାରେ ବଡଦାଣ୍ଡରେ 'ଶରଧାବାଲିରୁ ହାତେ ମାଗି' ଆଶ୍ରମ କଲେ ଏବଂ ସେହିଠାରେ ଦେହତ୍ୟାଗ କରନ୍ତେ, ବଡଦାଣ୍ଡରେ ହିଁ ସାଲବେଗଙ୍କୁ ସମାଧି ଦିଆଯାଇଥିଲା । ଅଦ୍ୟାପି ବଳଗଣ୍ଡିଠାରେ ସାଲବେଗଙ୍କ ସମାଧି ସେହିଠାରେ ରହିଛି ।



Digitized by PPRACHIN, SOA

## ୨୪

## ବହନ ଯିବି



ବହନ ଯିବି, କାଳିଆ ବଦନ ଦେଖିବି
ସିଂହଦୁଆର ପାଳ,
ଯେବେ କରିବ ଗୋଳ,
ପେଲି ପଶିବି ନ ଘୁଞ୍ଚିବି
ବହନ ଯିବି ...... ।।
ବାଇଶ ପାବଚ୍ଛ ଧୂଳି
ଡମୋ’ ଅଙ୍ଗେ ହେବି ବୋଲି
କୈବଲ୍ୟ କା’ ବୋଲେ ମାଗିବି,
ବହନ..... ।।
ଧନ୍ୟ କଳପବଟ
ଧନ୍ୟ କଳାରାହାଟ,
ଗରୁଡ ପଛରେ ଭେଟିବି
ବହନ...... ।।
ଜଗମୋହନ ଘରେ,
ସାଧୁଙ୍କ ସଙ୍ଗତରେ,
ତୋ’ ନାମ ହୃଦରେ ଜପିଧ
ବହନ......... ।।
କହେ ସାଲବେଗ ହୀନ,
ଜାତିରେ ମୁଁ ଯବନ,
ଚରଣେ ଶରଣ ପଶିବି,
ବହନ ଯିବି...... ।।



Digitized by PPRACHIN, SOA



## ୨୨

## ଧନ୍ୟ ଧନ୍ୟ ନୀଳଗିରିବାସୀ

ଧନ୍ୟ ଧନ୍ୟ ନୀଳଗିରିବାସୀ !
ଭାଗ୍ୟଥିଲେ ସାଧୁସଙ୍ଗେ ମିଶି ।
ପେଟପୂରାଇଣ କୈବଲ୍ୟ ପାବନ୍ତି ମୁଖେ ବୋଲୁଥା'ନ୍ତି ଏକାଦଶୀ, ନୀଳଗିରି ।।
ଯହିଁ ବିଜେ କରିଛନ୍ତି ରାମହରି ।।

ପ୍ରଭୁ, ବଡଦାଣ୍ଡ ଦେଖି ହେଲି ତୋଷ ।
ରେଣୁ ଘେନି ତୁଣ୍ଡେ କଲି ଗ୍ରାସ ।
ସିଂହଦ୍ୱାର ଠାରେ କୈବଲ୍ୟ ପାବନ୍ତେ ଟଙ୍କ ତୋରାଣିରେ ମନ ତୋଷ ।।

ସିଂହଦ୍ୱାରେ ବାଜେ ବେତ ବାଡି ।
ବାଜନ୍ତେ ପାତକ ଯାଏ ଛାଡି ।
ଶ୍ରୀଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ସନ୍ଥଜନମାନେ ଠେଲାଠେଲି ।।

ପ୍ରଭୁ, ବାଇଶି ପାବଛ ଗଲି ସୁଖେ ।
କୈବଲ୍ୟ ପସରା ବେନି ପାଖେ ।
ବ୍ରାହ୍ମଣ ଚଣ୍ଡାଳ ଏକମେଳ ହୋଇ କୈବଲ୍ୟ ପାବନ୍ତି ସୁଖେ ମୁଖେ ।।

ଏଥୁ ଅନନ୍ତରେ ଗଲି ଖରେ ।
ମୁକତି ମଣ୍ଡପ ଯେଉଁଠାରେ ।
କଳପ୍ରବଟକୁ ପ୍ରଦକ୍ଷିଣ କରି ଆଲିଙ୍ଗନ କଲି ପ୍ରେମଭରେ ।।

ରୋହିଣୀକୁଣ୍ଡ ପାଦୁକା ରଜ ।
ସିଂହମାଡି ବସି ଅଛି ଗଜ ।
ତା' ତହୁଁ ଅବା ମୁଁ କେତେ ବଡ ହେବି କାକ ପଡି ହେଲା ଚତୁର୍ଭୁଜ ।।



Digitized by PPRACHIN, SOA

ଓଡିଆ ଜଗବନ୍ଧୁଙ୍କ ରାଣୀ,
ସୁବର୍ଣ୍ଣ ଥାଳିରେ ପରଷଣି ।
ଶ୍ରୀଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ସନ୍ଥଜନମାନେ ଠେଲାଠେଲି ।।

କହେ ସାଲବେଗ ମୂଢମତି
ରଙ୍ଗାଚରଣରେ ଥାଉ ମତି ।
ଶ୍ରୀଜଗନ୍ନାଥଙ୍କ ଚରଣେ ଶରଣ ଦୟାକର ମୋତେ ଲକ୍ଷ୍ମୀପତି ।।

---

ପ୍ରସ୍ତୁତ ଭଜନରୁ ଜଣାପଡ଼େ-ସାଲବେଗଙ୍କୁ ଶ୍ରୀମନ୍ଦିର ଭିତରକୁ ଯିବାଲାଗି ଅନୁମତି ମିଳିଥିଲା । ତେଣୁ ସେ ମନ୍ଦିର ଭିତରର ଚାକ୍ଷୁଷ ବର୍ଣ୍ଣନା କରିଛନ୍ତି । ସାଲବେଗଙ୍କ ପ୍ରାଇଁ ନନ୍ଦିଘୋଷ ବାଟରେ ଅଟକିବା ଓ ପରେ ତାଙ୍କ ଦର୍ଶନ ପରେ ରଥଚାଲିବାରୁ, ଭକ୍ତ ଯବନଠାରେ ଶ୍ରୀଜଗନ୍ନାଥଙ୍କ ବିଭୂତି ପ୍ରତ୍ୟକ୍ଷ କରି, ତତ୍କାଳୀନ ଠାକୁରରାଜା ଓ ସେବକବୃନ୍ଦ, ତାଙ୍କୁ ଶ୍ରୀମନ୍ଦିର ଭିତରକୁ ଯିବାପାଇଁ ଅନୁମତି ଦେଇଥିବା ଅସମ୍ଭବ ନୁହେଁ ।





Digitized by PPRACHIN, SOA

## ୨୭

### କେଣେ ଘେନି ଯାଉଛ

କେଣେ ଘେନି ଯାଉଛ ଜଗନ୍ନାଥଙ୍କୁ ।
ଆମ୍ଭେ ଦର୍ଶନ କରିବୁ କାହାକୁ ।।

ଖୁଣ୍ଟିଆ ଡାକ ଦେଲେ ପହଣ୍ଡି ବିଜେ ହେଲେ
ବିଜୟ କର ପ୍ରଭୁ ଚାପକୁ
ଆମ୍ଭେ...... ।

କୁଳବଧୂଙ୍କ ରତି ପଣ୍ଡାଏ ଗତାଗତି
ବିଧାତା ବାମ ହେଲା ଓଡିଶାକୁ
ଆମ୍ଭେ....... ।

ବଡଦେଉଳୁ ବାହାରି ଶଗଡିରେ ବିଜେ କରି
ରେଣୁ ଯେ ପଡୁଥିବ ଶ୍ରୀମୁଖକୁ
ଆମ୍ଭେ..... ।

କହଇ ସାଲବେଗ ନିର୍ମାଲ୍ୟ କାହୁଁ ହେବ
ଧିକ ଧିକ ଆମ୍ଭ ଜୀବନକୁ
ଆମ୍ଭେ ଦର୍ଶନ କରିବୁ କାହାକୁ ।।

---

ଶ୍ରୀମନ୍ଦିର ତଥା ଶ୍ରୀଜଗନ୍ନାଥଙ୍କ ଉପରେ ମୋଗଲ ସୁବେଦାର ପ୍ରଚଣ୍ଡ ଆକ୍ରମଣ ଭୟରେ, ସେବକମାନେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଶଗଡିରେ ବିଜେ କରାଇ, ମଙ୍ଗଳା ନଦୀ ମାର୍ଗ ଦେଇ, ପଣ୍ଡା ଓ ସେବକମାନେ ଚିଲିକା ମଧ୍ୟସ୍ଥିତ କୌଣସି ଗୁପ୍ତସ୍ଥାନକୁ ନେଇ ଯିବାର ଦୃଶ୍ୟ ସାଲବେଗ ନିଜ ଆଖିରେ ଦେଖିଥିବାର ବର୍ଣ୍ଣନା କରିଛନ୍ତି ।



Digitized by PPRACHIN, SOA

# ୨୮



## ଜଗନ୍ନାଥ ହେ

ଜଗନ୍ନାଥ ହେ, କିଛି ମାଗୁନାହିଁ ମୁଁ ତୋତେ;
ମାଗୁନାହିଁ ଧନ ମାଗୁନାହିଁ ଜନ
ମାଗୁଛି ଶରଧାବାଲିରୁ ହାତେ ।।

ଆନ ଦରଶନ ନ ଲୋଡେ ନୟନ,
ଏକା ତୁମ୍ଭ ଦେଖା ବିନା ।
ଶୁଣିବାକୁ କାନ ନ ଇଚ୍ଛଇ ଆନ
ତୁମ୍ଭ ଚରିତେ କାମନା ।।

ଜିହ୍ୱା ନ ବାଞ୍ଛଇ ଗ୍ରାମ୍ୟ ଗୀତ ଗାଇବାକୁ ରଜନୀଦିବସ,
ତୁମ୍ଭ ନାମାବଳୀ କେବଳ ସଞ୍ଚାଳି ହୋଇଥାଉ ପୀତବାସ ।।

ନାସା ମୋର ତୃପ୍ତି ନ ଲଭଇ ଆନ
ସୁବାସ ଦ୍ରବ୍ୟ ଆଘ୍ରାଣେ ।
ତବ ଛଡାମାଳ ତୁଳସୀ କୁସୁମ,
ଚନ୍ଦନ କର୍ପୂର ଧ୍ୟାନେ ।।

ମୋ' ହସ୍ତ ଅଙ୍ଗୁଳି ରାମ ବନମାଳୀ ଜପୁଥାଉ ହରେ କୃଷ୍ଣ
କହେ ସାଲବେଗ ଜାତିରେ ଯବନ ତୋ' ତୀର୍ଥେ ଯାଉ ଏ ପ୍ରାଣ ।

---

ସାଲବେଗଙ୍କ ଆକୁଳ ନିବେଦନରେ ନନ୍ଦିଘୋଷ ରଥ ବଳଗଣ୍ଡିଠାରେ ଅଟକି ପୁଣି ଭକ୍ତର ଦର୍ଶନ ପରେ, ବଡ ଦେଉଳ ଅଭିମୁଖେ ଯିବାରୁ, ଭକ୍ତ ସାଲବେଗ ଶରଧାବାଲିରୁ ନିଜପାଇଁ ହାତେ ଜମି ମାଗି ସେହିଠାରେ ଆଶ୍ରମ କରି ଶେଷରେ ସେହିଠାରେ ଦେହତ୍ୟାଗ କରିଥିବାର ସ୍ମାରକ ସଦୃଶ ପ୍ରସ୍ତୁତ ଭଜନଟି ରଚନା କରାଯାଇଛି ।



Digitized by PPRACHIN, SOA

## ୧୯

## କଳାହାତୀ କଳା ଶ୍ରୀମୁଖ

କଳାହାତୀ କଳା ଶ୍ରୀମୁଖ
କାଳଯାକ ଡାକି ନଗଲା ଦୁଃଖ ।।

ତବନାମ କରିଣ ମାଳା
ତରିଯିବି ହେ ଚକାଡୋଳା
ଏ' ଭବସାଗରେ ଭାସୁଛି ଜଳରେ ସୋଲ ତରୀ ନେଇ ହୁଅ ନାବିକ
କଳାହାତୀ··········· ।

ହାତୀ ଯେବେ ଅଛି ବନରେ
ପଡୁଅଛି ସବୁ ମନରେ
ଶ୍ରୀନୀଳକନ୍ଦରେ ରହୁଅଛ ପଶି ଭକ୍ତଡାକୁଛନ୍ତି ନ ଶୁଣ ଦୁଃଖ
କଳାହାତୀ··········· ।

ଉଡେ ଧ୍ୱଜ ପତିତବାନା
ପତିତଙ୍କୁ ତାରିବ ସିନା
ପତିତପାବନ ମାନ ଉଦ୍ଧାରଣ କୁରୁସଭାତଳେ ଶୁଣିଲ ଦୁଃଖ
କଳାହାତୀ··········· ।

ସାଲବେଗ ଜାତି ପଠାଣ
ଡାକୁଛି ହେ ରମାରମଣ
ମାତା ଡାକୁଥିଲେ ହେ ବାଳମୁକୁନ୍ଦ ଚକାଡୋଳା ଆଉ ନଦିଅ ଦୁଃଖ ।।



Digitized by PPRACHIN, SOA

# ୩୦

## ଆଜି ବଡଦାଣ୍ଡ ଭିତ

ଆଜି ବଡଦାଣ୍ଡ ଭିତଭାରି ।
ତିନିରଥେ ତିନି ଠାକୁରେ ଯାଆନ୍ତି ଗୁଣ୍ଡିଚା ଯାତରା କରି ।।

ଜଗତର ନାଥ ଭକତଙ୍କ ପାଇଁ ।
ରତ୍ନସିଂହାସନୁ ଆସନ୍ତି ଓହ୍ଲାଇ ।
ପହଣ୍ଡି ହୋଇବେ ରଥେ ବିଜେ ହେବେ ଭାଇଭଗ୍ନୀ ସଙ୍ଗେ ଧରି ।।

ନନ୍ଦିଘୋଷେ ଉଭା ପ୍ରଭୁ ଜଗନ୍ନାଥ ।
ତାଳଧ୍ୱଜ ରଥେ ବଳରାମ ଭ୍ରାତ ।
ଦେବଦଳନରେ ଭଉଣୀ ସୁଭଦ୍ରା ରଥ ଚାଲେ ଢଳି ଢଳି ।।

ଭକତ ମେଳରେ ନୀଳାଦ୍ରି ବିହାରି ।
ଗୁଣ୍ଡିଚା ମନ୍ଦିରେ ଲଗାନ୍ତି ଗହଳି ।
ଧନ୍ୟ ଚକାଡୋଳା ଭକ୍ତଭାବେ ଭୋଳା ରଥ ଚାଲେ ଢଳି ଢଳି ।।

ନୁହେ ମୁଁ କବୀର ଅଟେ ସାଲବେଗ ।
ଅଟେ ମୁଁ ତୁମ୍ଭର ଚରଣ ସେବକ ।
ଦୟା ରଖିଥିବ ପ୍ରଭୁ ଜଗନ୍ନାଥ ନିତି କରେ ଏହି ଅଳି ।।



ପହଣ୍ଡି – ଶ୍ରୀମନ୍ଦିରରୁ ତିନିଠାକୁର ଓ ସୁଦର୍ଶନ ରଥ ଉପରକୁ ଆସିବା ବେଳର ଯାତ୍ରାକୁ 'ପହଣ୍ଡିବିଜେ' ବୋଲି କୁହାଯାଏ । ପ୍ରଥମେ ବଳରାମ ତାଳଧ୍ୱଜ ରଥକୁ ପହଣ୍ଡି ବିଜେ କରନ୍ତି । ପରେ ସୁଭଦ୍ରା ଦେବଦଳନ ରଥକୁ ଓ ଶେଷରେ ଶ୍ରୀଜଗନ୍ନାଥ ନନ୍ଦିଘୋଷ ରଥକୁ ପହଣ୍ଡିରେ ବିଜେ କରନ୍ତି । ପଣ୍ଡା ଓ ସେବକମାନେ ବାଦ୍ୟରୋଳ ମଧ୍ୟରେ ତିନିଠାକୁରଙ୍କୁ ହଲାଇ ଝୁଲାଇ ଅତ୍ୟନ୍ତ ମନୋଜ୍ଞ ଢଙ୍ଗରେ ତିନିରଥ ଉପରକୁ ନିଅନ୍ତି ।



Digitized by PPRACHIN, SOA

## ୩୧

## ଥକାମନ ଚାଲ ଯିବା

ଥକାମନ ଚାଲ ଯିବା
ଚକା ନୟନ ଦେଖିବା
ଶଙ୍ଖନାଭି-ମଣ୍ଡଳରେ ବେନି ନେତ୍ର ପଖାଳିବା ।ଘୋଷା ।
ବାଟରେ ବାଟ ମଙ୍ଗଳା
ଦେଖିବା ଅଠର ନଳା
ପାଞ୍ଚମନ ଏକ ମେଳେ ନରେନ୍ଦ୍ରେ ସ୍ନାନ କରିବା ।୧ ।
ପହଞ୍ଚିବା ବଡ ଦାଣ୍ଡେ
ସେ ରେଣୁ ପାଇବା ତୁଣ୍ଡେ
ଛତା ତଳେ ରହି ଦଣ୍ଡେ ସାଧୁଙ୍କ ସେବା କରିବା ।୨ ।
ସିଂହଦ୍ୱାରେ ଭିଡାଭିଡି
ବାଜୁଅଛି ବେତ ବାଡି
ଠେଲି ଦେଇ ଯିବା ମାଡି, ଧକା ବାଜିଲେ ସହିବା ।୩ ।
ବାଇଶି ପାବଛେ ବିକା
ହେଉଛି କୈବଲ୍ୟ ଚୋଖା
ହାଣ୍ଡିକ ପତେ ସିଉକା, ମନ ରଙ୍କା ଛଡାଇବା ।୪ ।
ଗରୁଡ ପଛରେ ଦେଖ
ଦିଶୁଛି କଳା ଶ୍ରୀମୁଖ
କହଇ ସାରିଆ ଭିକ ବଳରାମଙ୍କୁ କହିବା ।୫ ।

---

ସାଲବେଗଙ୍କ ଅନ୍ୟନାମ 'ସାଳିଆ' ଥିବାର ବର୍ଣ୍ଣନା 'ଜଳିଭାରତ' ପୁସ୍ତକରେ ରହିଛି । ସାରିଆ ଓ ସାଳିଆ ନାମରେ ସାଲବେଗ ହିନ୍ଦୁମାନଙ୍କ ଦ୍ୱାରା ପ୍ରଚାରିତ ହୋଇଥିବାର ଅନୁମାନ କରାଯାଏ । ପ୍ରସ୍ତୁତ ରଚନାର ଭାଷା, ଭାବ ଓ ଶୈଳୀ ସାଲବେଗଙ୍କ ରଚନାର ଅନୁରୂପ ହୋଇଥିବାରୁ ଏହା ସାଲବେଗଙ୍କ ରଚନା ବୋଲି କହିବା ଅସମୀଚୀନ ନୁହଁ । ବିଶେଷ ଆଲୋଚନା ପାଇଁ 'ଭକ୍ତକବି ସାଲବେଗ' ପୁସ୍ତକର ୬୩ ପୃଷ୍ଠା ଦ୍ରଷ୍ଟବ୍ୟ ।



Digitized by PPRACHIN, SOA

# ୩୨

## ଆହେ ନୀଳାଚଳ ନାୟକ



ଆହେ ନୀଳାଚଳ ନାୟକ
ଦୀନ-ଅକିଞ୍ଚନ-ସୁଖଦାୟକ ।ଘୋଷା ।
ଚନ୍ଦ୍ରକାନ୍ତି ଜିଣି କମନୀୟ ଠାଣି
କଳା କଳେବରକି ଜକ ଜକ ।
ଆର୍ତ୍ତୀ ଜନଙ୍କର ଆର୍ତ୍ତ ବିଧ୍ୱଂସନେ
ମହାବାହୁ ପ୍ରସାରିଛ କାଳକ ।।
ଧବଳ କମଳ ନୟନ ଯୁଗଳ
ଚାହାଁଣି ଭଙ୍ଗିମା ତ ଅତିରେକ ।
ଦଶନ-ବସନ ରଙ୍ଗିମା ଅତୁଳ
ପ୍ରସନ୍ନମୟ ଶ୍ରୀକଳା ଶ୍ରୀମୁଖ ।।
କପାଳରେ ସୁନା ଚିତା ସୁଶୋଭିତା
ତହିଁକି ପୁଣି କସ୍ତୁରୀ ତିଳକ ।
ଚନ୍ଦନର ବିନ୍ଦୁ କି ସେ ବାଳଇନ୍ଦୁ
ଅତ୍ୟନ୍ତ ଘଟଣ ସେ ତ୍ରିପୁଣ୍ଡ୍ରକ ।।
ଶ୍ରବଣ ଯୁଗଳେ ମକର କୁଣ୍ଡଳ
ଖେଳଇ ସେ ଗଣ୍ଡ ମଣ୍ଡଳ ପାଖ ।
କରରେ କଟଟି କଙ୍କଣ ବାହୁଟି
ହୃଦୟରେ ବ୍ୟାଘ୍ରନଖି ପଦକ ।।
ଭଣେ ଦୀନକୃଷ୍ଣ ହୋଇଣ ସତୃଷ୍ଣ
ଅରୁଣ-ପଙ୍କଜ-ଚରଣ ରଙ୍କ,
ବଳିଆର ଭୁଜଛାୟାତଳେ ପ୍ରଭୁ !
ଆହ୍ଲାଦ ହୃଦୟେ ଦାସକୁ ରଖ ।।

---

କବି ଦୀନକୃଷ୍ଣ ନାମରେ ଚାରି ପାଞ୍ଚ ଜଣ କବି ଓଡିଆ ସାହିତ୍ୟ କ୍ଷେତ୍ରରେ ଖ୍ୟାତିପ୍ରାପ୍ତ ହୋଇଛନ୍ତି । ତନ୍ମଧ୍ୟରେ 'ରସକଲ୍ଲୋଳ' ର ପ୍ରଣେତା କୃଷ୍ଣଦାସ ଥିଲେ ପୁରୀର ଅଧିବାସୀ ଓ ରସବିନୋଦ ଆଦି ପୁସ୍ତକର ପ୍ରଣେତା ଦୀନକୃଷ୍ଣ ଥିଲେ ବାଲେଶ୍ୱର ଜିଲ୍ଲାର ସୁବର୍ଣ୍ଣରେଖା ନଦୀତୀରସ୍ଥ ଜଳେଶ୍ୱର ଅଞ୍ଚଳର କବି । ପ୍ରସ୍ତୁତ ଭଜନଟି ପୁରୀବାସୀ ଦୀନକୃଷ୍ଣଙ୍କ ରଚନା ବୋଲି ଅନୁମାନ କରାଯାଏ । ତାଙ୍କ ସମୟ ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀ (୧୬୮୬-୧୭୧୩) ।



Digitized by PPRACHIN, SOA

## ୩୩

### ଶ୍ରୀଜଗନ୍ନାଥ କୃପାନିଧାନ ହେ



ଶ୍ରୀଜଗନ୍ନାଥ କୃପାନିଧାନ ହେ !
କର ଦୀନରେ କୃପା ଅବଧାନ ହେ ।।

ସେବକ ଅପରାଧୀ ହେଲେ କରୁଣାନିଧି,
କ୍ଷମା ତ ପ୍ରଭୁପଣ ବିଧାନ ହେ ।।

ସାଧୁଜନଙ୍କ ସଙ୍ଗେ ମଜ୍ଜି କୀର୍ତ୍ତନ ରଙ୍ଗେ,
ନ କଲି ତୁମ୍ଭ ଯାତ୍ରା ଲୋକନ ହେ ।।

ତୁମ୍ଭ ଶ୍ରୀମୂର୍ତ୍ତି ଶୋଭା ଦେଖି ମୋ' ନେତ୍ର ଲୋଭା,
ନୋହିଲା ବ୍ୟର୍ଥ ହେଲା ନୟନ ହେ ।।

ସେବା ବିନା ତୁମ୍ଭର ହେ କଞ୍ଜନେତ୍ର ମୋର,
ଧିକ ରାଜ୍ୟ ପ୍ରଭୁତ୍ୱ ଜୀବନ ହେ ।।

ଆହେ ଆରତତ୍ରାଣ ହୁଅ ଦୁଃଖୀ ଶରଣ,
ଦୀନବନ୍ଧୁ ଦୁଃଖ ବିମୋଚନ ହେ ।।

---

ଘୁଶଙ୍ଗୀର ରାଜା ଦୀନବନ୍ଧୁ ରାଜ ହରିଚନ୍ଦନ ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀର ଅନ୍ୟତମ ରାଜକବି ରୂପେ ସୁପରିଚିତ । ଶ୍ରୀରାଧାକୃଷ୍ଣଙ୍କ ଲୀଳା ରଚନାରେ ସେ ଥିଲେ-ଜଣେ ସୁଦକ୍ଷ ବିଜ୍ଞାଣି । ତାଙ୍କ ରଚିତ 'ରାଧାକୃଷ୍ଣ ଲୀଳାମୃତ ସାଗର' ଓଡିଆ କୃଷ୍ଣକାବ୍ୟର ଏକ ପ୍ରସିଦ୍ଧ ଭକ୍ତିକାବ୍ୟ । ତାଙ୍କ ବଂଶରେ ଏକାଧିକ ରାଜା କବି ରୂପେ ଓଡିଆ ସାହିତ୍ୟରେ ସୁପରିଚିତ ।

କୃପାନିଧାନ-କରୁଣାକର । ଲୋକନ-ଦେଖିବା । କଞ୍ଜ-ପଦ୍ମ । କଞ୍ଜନେତ୍ର-ପଦ୍ମନେତ୍ର । ଆରତତ୍ରାଣ-ଦୁଃଖବିନାଶକ ।



Digitized by PPRACHIN, SOA

# ୩୪

## ମନ ଥୟ କରି ଦେଖ



ମନ ଥୟ କରି ଦେଖ ଏଥ ।
ନୀଳକନ୍ଦରେ ସୁନ୍ଦର ଜଗନ୍ନାଥ ।।

ଏହିପ୍ରଭୁ ଜଗନ୍ନାଥ କଶ୍ୟପ ଋଷିଙ୍କ ସୁତ
ବାମନ ମୂରତି ହୋଇ ବଳିଦ୍ୱାରେ ଉପଗତ ।
କରେ ଘେନି କୁଶପାତ୍ର ହରିଲେ ତାହାର ବିତ୍ତ
ପଦ୍ମପାଦ ଦେଇଥିଲେ ବଳିମାଥ ।।

ଏହି ପ୍ରଭୁ ଜଗନ୍ନାଥ ଦଶରଥଙ୍କର ସୁତ
ସୀତୟା ଘେନି ସଙ୍ଗତ ବୁଲିଲେ ଗହନ ପଥ ।
ସାଗରେ ବାନ୍ଧିଲେ ପଥ ଲଙ୍କାକୁ କଲେ ନିପାତ
ସିତାଛଳେ ବଧିଲେଟି ଦଶମାଥ ।।

ଏହି ପ୍ରଭୁ ଜଗନ୍ନାଥ ନନ୍ଦର ହୋଇଲେ ସୁତ
କାଳୀ ଦଳି ପାଦଗତ ମଛିଲେଟି ସୁରନାଥ ।
କଂସ ଅସୁର ନିପାତ ଜଗତେ ଅତି ବିଖ୍ୟାତ
ଭାରତ ରଥରେ ବାହି ପାର୍ଥ ରଥ ।।

ଏ' କଳିକାଳରେ ନାଥ ଶଙ୍ଖଚକ୍ର ଧରି ହସ୍ତ
ବସିଛି କୈବଲ୍ୟ ହାଟ ପାପୀଏ ଭକ୍ଷି ମୁକତ ।
କିଶୋଲ୍ଲା କଳା ଶ୍ରୀମୁଖ ଦେଖିଲେ ଖଣ୍ଡଇ ଦୁଃଖ
ପ୍ରଜାପତି ସଙ୍ଗେ ବିଶ୍ୱନାଥ ।।

ଏହି ପ୍ରଭୁ ଜଗନ୍ନାଥ ଶଚୀର ହୋଇଲେ ସୁତ
ବୈଷ୍ଣବଧର୍ମ ବିଖ୍ୟାତ ଶିଖାଇଲେ ମହାମନ୍ତ୍ର ।
ବୁଲିଲେ ସାରା ଜଗତ ଭକତ ଘେନି ସଙ୍ଗତ
ଦ୍ୱିଜ ବାଇଧର ଆଶ୍ରା ଲକ୍ଷ୍ମୀକାନ୍ତ ।।



Digitized by PPRACHIN, SOA

ଦ୍ୱିଜ ବାଇଧରଙ୍କ ଜନ୍ମ ସପ୍ତଦଶ ଶତାବ୍ଦୀରେ ହୋଇଥିବାର ଅନୁମାନ କରାଯାଏ । ତାଙ୍କ ରଚିତ ଶ୍ରୀଜଗନ୍ନାଥଙ୍କ ଭଜନ, ଶ୍ରୀରାଧାକୃଷ୍ଣ ପଦ୍ୟ, ଶ୍ରୀଚୈତନ୍ୟଙ୍କ ଜଣାଣ ଓ ଅଣାକାର ଭଜନ, ଓଡ଼ିଆ ଭଜନ ସାହିତ୍ୟକୁ ସମୃଦ୍ଧ କରିଛି । ପ୍ରସ୍ତୁତ ଭଜନରେ ବାମନ, ରାମ, କୃଷ୍ଣ, ଚୈତନ୍ୟ ଓ ଶ୍ରୀଜଗନ୍ନାଥଙ୍କ ମଧ୍ୟରେ ଅଭେଦ କଳ୍ପନା କରାଯାଇଛି ।

ନୀଳକନ୍ଦର- ନୀଳଗିରିର ଗୁହା ଅର୍ଥାତ୍ ଶ୍ରୀମନ୍ଦିର ।

ବିଷ୍ଣୁ ବାମନରୂପରେ କଶ୍ୟପ ଋଷିଙ୍କ ପୁତ୍ର ଭାବେ ଜନ୍ମ ଗ୍ରହଣ କରି, ଅସୁରରାଜ ବଳିଙ୍କଠାରୁ ତିନିପାଦ ଭୂମିଦାନ ମାଗିବା ଛଳରେ ତା'ର ସର୍ବସ୍ୱ ହରଣ କରିବା ସଙ୍ଗେସଙ୍ଗେ ତା' ମସ୍ତକରେ ପାଦ ଦେଇ, ତାକୁ ପାତାଳକୁ ଚାପିଥିଲେ ।

ଭାରତରଥ-ମହାଭାରତ ଯୁଦ୍ଧରେ ଅର୍ଜୁନଙ୍କ ରଥ ନନ୍ଦିଘୋଷ
ପାର୍ଥ-ପୃଥାଙ୍କ ପୁତ୍ର ଅର୍ଥାତ୍ କୁନ୍ତୀଙ୍କ ପୁତ୍ର ଅର୍ଜୁନ ।
କୈବଲ୍ୟହାଟ-ଶ୍ରୀମନ୍ଦିରରେ ମହାପ୍ରସାଦ ମିଳୁଥିବା ଆନନ୍ଦବଜାର,
ଶଚୀସୁତ-ଶ୍ରୀଚୈତନ୍ୟ । ଶ୍ରୀଚୈତନ୍ୟଙ୍କ ପିତାଙ୍କ ନାମ ଜଗନ୍ନାଥ ମିଶ୍ର ଓ ମାତାଙ୍କ ନାମ ଶଚୀ ଦେବୀ ଥିଲା ।





Digitized by PPRACHIN, SOA

# ୩୪

## ମାନ ଉଦ୍ଧାରଣ



ମାନ ଉଦ୍ଧାରଣ ! କରହେ କାରଣ
ଶରଣ ମୁଁ ତୁମ୍ଭ ପାଦ ତଳେ ।ଘୋଷା ।
ଅନାଥର ନାଥ· ନୀଳଗିରି ନାଥ
ଜଗନ୍ନାଥ ନାମ ନୀଳାଚଳେ,
ମହୋଦଧି କୂଳେ କଳ୍ପବଟ ମୂଳେ
ବିଜେ କରିଛ ବଡ଼ ଦେଉଳେ ।୧ ।
ଲକ୍ଷେ ଯୋଜନରେ ଗଜ ଡ଼ାକ ଦେଲା
ତା' ଡ଼ାକ ଶୁଣିଲ ପଶାଖେଳେ,
ମାରକଣ୍ଡ ଋଷି ଯାଉଥିଲେ ଭାସି
ଉଦ୍ଧରି ଧଇଲ ବାମ କରେ ।୨ ।
କିଷ୍କିନ୍ଧାକୁ ଗଲ ବାଳି ବିନାଶିଲ
ବନ୍ଧ ଯେ ବାନ୍ଧିଲ ସିନ୍ଧୁ ଜଳେ,
ଲଙ୍କାରେ ରାବଣ ବଧିଲ ଆପଣ
ଜନକନନ୍ଦିନୀ-ସୀତା-ଛଳେ ।୩ ।
ଯୁଧିଷ୍ଠିର ବୋଲେ ହସ୍ତିନାକୁ ଗଲ
ଭୋଜନ କଲ ବିଦୁର ଘରେ,
କୁରୁସଭା ତଳେ ଦ୍ରୌପଦୀ ଚିନ୍ତିଲା
କୋଟି ବସ୍ତ୍ର ଦେଲ· ଅବହେଳେ ।୪ ।
ବଣ ପୋଡ଼ି ବେଳେ ଘୋର ଦାବାନଳୁ
ଉଦ୍ଧରି ରଖିଲ ବ୍ରଜବାଳେ,
କହେ ଉପଇନ୍ଦ୍ର କବି-କୁଳ-ଚନ୍ଦ୍ର
ଶରଣ ମୁଁ ତୁମ୍ଭ ପାଦତଳେ ।୫ ।

---

ଓଡ଼ିଆ ସାହିତ୍ୟର ରୀତିଯୁଗର ପ୍ରସିଦ୍ଧ କବି ଉପେନ୍ଦ୍ର ଭଞ୍ଜ ଘୁମୁସର ରାଜ୍ୟର କୁଲାଡ଼ ଉଆସରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାମହ ଥିଲେ-ଘୁମୁସର ରାଜା ଧନଞ୍ଜୟ ଭଞ୍ଜ ଓ ପିତା ଥିଲେ-ନୀଳକଣ୍ଠ ଭଞ୍ଜ । ପରେ ଘନ ଭଞ୍ଜ ଘୁମୁସର ସିଂହାସନ ଅଧିକାର କରିବାରୁ, ଉପେନ୍ଦ୍ର ଭଞ୍ଜ ନୟାଗଡ଼ ରାଜ୍ୟରେ ଆଶ୍ରୟ ଗ୍ରହଣ କରି, 'ରାମତାରକ ମନ୍ତ୍ର' ପ୍ରସାଦରୁ 'ବୈଦେହୀଶ ବିଳାସ', କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ପ୍ରେମ ସୁଧାନିଧି, ଲାବଣ୍ୟବତୀ ଆଦି ବହୁ ପୁସ୍ତକ ତଥା ବହୁ ସଂଖ୍ୟକ ଭଜନ, ଚଉପଦୀ, ବୋଲି, ପୋଇ ଆଦି ରଚନା କରିଥିଲେ । ତାଙ୍କ ସମୟ ଖ୍ରୀ:ଅ: ୧୬୮୫-୧୭୩୦ ବୋଲି ଅନୁମାନ କରାଯାଏ ।



Digitized by PPRACHIN, SOA



୩୬

## ପତିତପାବନ ବାନା

ପତିତପାବନ ବାନା ଆଉ କେତେ ବେଳକୁ
ଭାସିଗଲି ଭବ ଜଳେ ନାବ ଦିଅ କୂଳକୁ ।ଘୋଷା ।

ରୋପିବାର ବୃକ୍ଷ ଗୋଟି କାଟୁଅଛ ମୂଳକୁ
ତିନିପୁରେ ଅପକୀର୍ତ୍ତି ହେବ ଆଦିମୂଳକୁ ।୧ ।

ଦୂରେ ଥାଇ ଡ଼ାକ ଦେଲେ ଡ଼େରିଥାଅ କର୍ଣ୍ଣକୁ
ନିକଟରେ ନ ଶୁଣିଲ ମୋ କର୍ମ - ଅବେଳକୁ ।୨ ।

ଲକ୍ଷେ ଯୋଜନରେ ଗଜ ଡ଼ାକ ଦେଲା ତୁମ୍ଭଙ୍କୁ
ନକ୍ର ନାଶିବାକୁ ଚକ୍ର ଦେଲ ପେଶି ଜଳକୁ ।୩ ।

ନକ୍ଷତ୍ର-ଦିହୁଡ଼ି ଜଳେ ସନ୍ଧ୍ୟାଦୀପ ବେଳକୁ
ଲମ୍ବିଛି ଦୟଣାମାଳ ପଦ୍ମପାଦ ତଳକୁ ।୪ ।

ଯୋଗୀଜନମାନେ ହୃଦେ ଧ୍ୟାଉଛନ୍ତି ଯାହାକୁ
ଭଣିଲେ ବୀରକେଶରୀ ଆଶା ପାଦ ତଳକୁ ।୫ ।

---

ରାଜକବି ବୀରକେଶରୀ ଦେବ ଖ୍ରୀ:ଅ:୧୭୩୬ରେ ଖୁରୁଧା ସିଂହାସନ ଅଧିକାର କରି ଠାକୁର ରାଜା ରୂପେ ଖ୍ୟାତି ଅର୍ଜନ କରିଥିଲେ । ତାଙ୍କ ପିତା ଗଜପତି ରାମଚନ୍ଦ୍ର ଦେବ (୨ୟ) ମୁସଲ୍‌ମାନ ଧର୍ମ ଗ୍ରହଣ କରିଥିବାରୁ, ସେ ପିତାଙ୍କ ବିରୁଦ୍ଧରେ ବିଦ୍ରୋହ କରିଥିଲେ । ମରହଟ୍ଟା ଶାସକ ତାଙ୍କୁ ରଣଦେୟ ବାବଦ ବନ୍ଦୀ କରି ନାଗପୁରରେ ରଖିଥିଲେ । ସେହି ସମୟରେ ରାଜଦରବାରର ଦୁଇଜଣ ପ୍ରସିଦ୍ଧ ବିଦ୍ୱାନ୍ ଚନ୍ଦ୍ରଶେଖର ରାୟଗୁରୁ ଓ ବିଶ୍ୱନାଥ ପାଟଯୋଷୀ ନିଜ ବିଦ୍ୱତ୍ତାର ପରାକାଷ୍ଠା ଦେଖାଇ ଗଜପତି ବୀରକେଶରୀଙ୍କ ବନ୍ଦୀରୁ ମୁକ୍ତ କରାଇଥିଲେ । ପ୍ରସ୍ତୁତ ଭଜନ ଓ ପରବର୍ତ୍ତୀ ଭଜନଟି ରାଜକବିଙ୍କର ସେହି ସମୟର ରଚନା ବୋଲି କଥିତ ହୁଏ ।



Digitized by PPRACHIN, SOA

## ୩୭

### ଭୁଜତଳେ ମୋତେ ରଖ



ଭୁଜତଳେ ମୋତେ ରଖ ମହାବାହୁ !
ବାହୁ ତଳେ ମୋତେ ରଖ !
ବିପୁଳ ଭୁଜ ବିସ୍ତାରି ଦେଲେ ଛାର
କି କରି ପାରିବ ଦୁଃଖ ।।ଘୋଷା।।
ସଜ ହୋଇଥିବ ନନ୍ଦିଘୋଷ ରଥ
ମୁଁ ଥିବି ତୁମ୍ଭ ସେବାରେ
ତୁମ୍ଭେ ଦୀନବନ୍ଧୁ ! ନିର୍ଦ୍ଦୟ ହୋଇଲେ
କି ବୋଲିବେ ଏ ସଂସାରେ ।।୧।।
ଏ ଗଜବାଜି-କ୍ଷିତିପତି ସମ୍ପତ୍ତି
ରତିଏ ରୁଚଇ ନାହିଁ
ଭୁବନମୋହନ ଚକାନୟନକୁ
ଯେତେବେଳେ ଦିଏ ଚାହିଁ ।।୨।।
ଦିନକୁ ଦିନ ତ ଦୁଃଖ ଅତିରେକ
ସୁଖ ତ ଦିଶଇ ନାହିଁ
ଭାସି ଯାଉଅଛି ଏ ଭବସାଗରେ
ରକ୍ଷାକର ଭାବଗ୍ରାହୀ ।।୩।।
ଶ୍ରୀକ୍ଷେତ୍ର ନବରେ ମହା ଐଶ୍ୱର୍ଯ୍ୟରେ
ଥିଲେ ହେଁ କମଳା ସାଇଁ
ବାଇଶି ପାବଚ୍ଛ ନ ଉଠିବା ଯାଏଁ
ଆନନ୍ଦ ନ ପାଏ କାହିଁ ।।୪।।
ସେବାରୁ ଅନ୍ତର ହେଲି ଯେବେ ପ୍ରଭୁ
ଏ ପ୍ରାଣ ଥିବ କି ପାଇଁ
ଓହ୍ଲାଇ ନ ଦିଅ କିମ୍ପା ମୋ ମଥାରୁ
ଜଞ୍ଜାଳ ଭାର ଗୋସାଇଁ ।।୫।।
ମୁଁ ଛାର ପତିତ ଭରସା ରଖିଛି
ଶ୍ରୀ ରଙ୍ଗା ଚରଣ ତଳେ
ଶ୍ରୀ ବୀରକେଶରୀ ମହାରାଜା ଭଣେ
ଦୟାକର ଏତେବେଳେ ।।୬।।

Digitized by PPRACHIN, SOA

## ୩୮

# ଆହେ ପ୍ରଭୁ କଳାଶ୍ରୀମୁଖ



ଆହେ ପ୍ରଭୁ କଳାଶ୍ରୀମୁଖ !
କାଳେ କାଳେ ମୋର ନ ଗଲା ଦୁଃଖ ।
କି ଅବା ଛାମୁରେ ଜଣାଇବି ମୁହିଁ ।
ସାକ୍ଷାତେ ମୋ ଦୀନ ଅବସ୍ଥା ଦେଖ ।।
ତେଣୁ ଶ୍ରୀଧାମକୁ ଯାଇ ନ ପାରଇ ।
ଖଣ୍ଡିଏ ଡ ମୋର ନ ଥାଇ ଭେକ ।।
ସାହୁଙ୍କ ଜଞ୍ଜାଳ କୁଟୁମ୍ବଙ୍କ ଗୋଳ
ଅନ୍ତର ବେଦନା ସବୁଁ ଅଧିକ ।
କା'ଆଗେ କହିବି କେ କଷ୍ଟ ଫେଡ଼ିବ
ସଂସାରେ ମୋ' ସରି ନାହିଁ ନିରେଖ ।।
ମନ ମଧ୍ୟେ ମୋର ହରଷ ନ ଥାଇ ।
ହୃଦୟ ମଧ୍ୟରେ ସଦା ବିମୁଖ ।
ଚଉବର୍ଗଦାନୀ ଆଶ୍ରେ କରି ମୁଁ ଯେ କାହିଁରେ ଆଉ ନ ପାଇଲି ସୁଖ ।।
ବାତଚକ୍ର ପ୍ରାୟେ ମନ ଭ୍ରମୁଥାଇ
ଦଣ୍ଡେ ନ ରହଇ ତୁମ୍ଭର ପାଖ ।
କହେ ବନମାଳୀ ଶଙ୍ଖରେ ପୂରାଇ
ଚକ୍ର ଉହାଡ଼ିଣ ଘୋଡ଼ାଇ ରଖ ।।





---

କବି ବନମାଳୀ ପଟ୍ଟନାୟକ ପୁରୀ ଦୋଳମଣ୍ଡପ ସାହୀର କରଣ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ସେ ଖୋର୍ଦ୍ଧା ରାଜା ବୀରକେଶରୀ ଦେବଙ୍କ (ଖ୍ରୀ:ଅ: ୧୭୩୬-୯୨) ସମସାମୟିକ ଥିଲେ । ସେ ରାଜା ବୀରକେଶରୀ ଦେବଙ୍କ ଠାରୁ ବାଇଶି ବାଟି ଜମି ଦାନ ସ୍ୱରୂପ ପାଇଥିଲେ । ସେ ଥିଲେ ଶ୍ରୀକ୍ଷେତ୍ର ବାସୀ । ପରେ ସନ୍ନ୍ୟାସ ହୋଇ ଭାରତର ବିଭିନ୍ନ ସ୍ଥାନରେ ପରିଭ୍ରମଣ କରିଥିଲେ । ତାଙ୍କ ରଚିତ ରାଧାକୃଷ୍ଣ ଚଉପଦୀ, ଶ୍ରୀଜଗନ୍ନାଥଙ୍କ ଭଜନ ଓ ଅନ୍ୟାନ୍ୟ ପଦ୍ୟାବଳୀ ଓଡ଼ିଶାର ସର୍ବତ୍ର ପ୍ରଚାରିତ ହୋଇଛି ।

ଚଉବର୍ଗଦାନୀ : ବିଷ୍ଣୁ ହେଉଛନ୍ତି - ଧର୍ମ, ଅର୍ଥ, କାମ ଓ ମୋକ୍ଷଦାତା ।
ବାତଚକ୍ର : ଘୂର୍ଣ୍ଣିବାତ୍ୟା ବା ଖଣ୍ଡିଆଭୂତ ।



Digitized by PPRACHIN, SOA

## ୩୯

### ଏହି ଅଳି ଶ୍ରୀଛାମୁରେ

ଏହି ଅଳି ଶ୍ରୀଛାମୁରେ ଦୀନବନ୍ଧୁ !
ଏହି ଅଳି ଶ୍ରୀଛାମୁରେ !
ଶ୍ରୀ ରଙ୍ଗା ଚରଣ ସେବାରେ ମୋ ମନ
ରହିଥାଉ ନିରନ୍ତରେ ।ଘୋଷା ।

ଦାନା କନା ପଛେ ମନା ହେଉ ମୋତେ
ନୀଳଚକ୍ର ବାନା ଚାହିଁ
ସୁଖୀ ହେଉଥିବି ଅଖିଳପତି ହେ !
ନିର୍ଦ୍ଦୟ ହୋଇବ ନାହିଁ ।।୧।।

ବାରମାସେ ତେରଯାତ୍ରା ଦେଖୁଥିବି
ଶ୍ରୀକ୍ଷେତ୍ରେ ହୋଇ ଭିକାରୀ
ସାଧୁ ସନ୍ଥଙ୍କର ବୋଲାଇ କିଙ୍କର
ମାଗୁଥିବି ମଧୁକରୀ ।।୨।।

ଆନନ୍ଦ ବଜାରେ ବୁଲି ମୁଁ ମଜାରେ
ଗାଉଥିବି ତୋର ନାମ
ତୋ ପ୍ରେମସାଗରେ ବୁଡ଼ି ଯାଉଥିବି
ବୋଲି ହରେକୃଷ୍ଣ ରାମ ।।୩।।

ଏଥିପାଇଁ କୁଳ ମୂଳ ହରାଇଛି
ସାଥୀ କରି ତୋତେ ଏକା
ଦାସ ବନମାଳୀ ଦୋଷ ନ ଧରିବୁ
ଗୋବର୍ଦ୍ଧନଗିରି ଟେକା ।।୪।।





Digitized by PPRACHIN, SOA



## ୪୦

### ପତିତଜନଙ୍କୁ ଉଦ୍ଧରିବା ପାଇଁ

ପତିତଜନଙ୍କୁ ଉଦ୍ଧରିବା ପାଇଁ
ଉଡ଼ାଉଅଛ ପତାକା ।
ବାହୁଟେକି ତୁମେ ବସି ଚାହୁଁ ଚାହୁଁ
ବିପତ୍ତି କରୁଛି ଡ଼ଙ୍କା, ମହାପ୍ରଭୁ ହେ ! ।

ନାଶ ଗଲେ ତୁମ୍ଭେ ପରେ କି କରିବ,
କରୁଣା ଭଣ୍ଡାର ଫେଇ ।
ଦୁଃଖୀ ଗଲେ ନାଶ ଅର୍ଜିବ କି ଯଶ,
ପଛେ ଚଉବର୍ଗ ଦେଇ, ମହାପ୍ରଭୁ ହେ ! ।

ଘୋର ନବଘନ ଥାଉଁ ଯେବେ ଦୀନ-
ଚାତକ ଜୀବନ ହରାଇବ ।
ସମୁଦ୍ରେ ବରଷି ଘୋର ଜଳରାଶି
ଚାତକବନ୍ଧୁ କି ବୋଲାଇବ ।।

ଦୀନବନ୍ଧୁ ବୋଲି ନାମ ଯେ ବହିଛ,
ଏହା ନ ଚେତ କି ଭାବଗ୍ରାହୀ ।
ଏବେ ଏଣିକି ଏ' ନାମ ନ ବହିବ,
ଚକ୍ର ପରୁ ନେତ ଥୁଅ ନେଇ ।।

ତେବେ ତୁମ୍ଭଙ୍କୁ କେ କାହିଁକି କହିବ,
କର୍ମ ଆଦରି ସହିବ ଦୁଃଖ ।
ନିରାଶ ଜଳଧି ତୁମ୍ଭ ନାମ ସିଛି,
ଜଗତରେ ବାଜିଯିବ ଡ଼ାକ ।।



Digitized by PPRACHIN, SOA

ଆଉ ଭୁବନରେ ଠାକୁର ଖୋଜିବା,
ତୁମ୍ଭ ପରି କେହି ଥିଲେ ଜଣେ ।
ଦୁଃଖୀ ଲୋକଙ୍କର ଦୁଃଖ ହରୁଥିବେ,
କୃପା ବିଲୋକନ ନେତ୍ର କୋଣେ ।।

ସୁଦର୍ଶନ ନାମେ ଚକ୍ର ବହିଥିବେ,
ଟେକି ବାହୁରେ ଦକ୍ଷିଣ କରେ ।
କହେ ନିତ୍ୟାନନ୍ଦ ଅପରାଧୀ ମନ୍ଦ,
ମୋହର ଶରଣ ତାଙ୍କ ଠାରେ ।।



କବି ନିତ୍ୟାନନ୍ଦ ଦାସ ଖୁବ୍ ସମ୍ଭବତଃ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର କବି ରୂପେ ଶ୍ରୀଜଗନ୍ନାଥଙ୍କ ଭଜନ ଓ ଅଣାକାର ଭଜନ ଲେଖିଛନ୍ତି । ପ୍ରସ୍ତୁତ ଭଜନଟି ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନଙ୍କ କଣ୍ଠରେ ସ୍ୱର ଯାଦୁକରୀ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଭକ୍ତର ଆକୁଳତା ପ୍ରକାଶ କରେ ।

ଚଉବର୍ଗ - ଧର୍ମ, ଅର୍ଥ, କାମ, ମୋକ୍ଷ । ଜଳଧି - ସମୁଦ୍ର, ବିଲୋକନ - ଦୃଷ୍ଟି ।



Digitized by PPRACHIN, SOA



# ୪୧

## ଚନ୍ଦନ ଲାଗି ସମୟେ

ଚନ୍ଦନ ଲାଗି ସମୟେ ଚିନ୍ତ ଚିନ୍ତାମଣି କି ।।
ସୁବେଶର ଲାଗି ଶେଷ ଲାଗି ହୋଇ ଝୀନବାସ
କଟୀରେ ସୁବର୍ଣ୍ଣଝୁମ୍ପା, ଆହା କେଡ଼େ ଠାଣି କି ।।
ତିନିବାଡ଼େ ତିନିଲୋକ ସେବକ ପଶୁପାଳକ
ରତ୍ନସିଂହାସନେ ଉଭା ଯୋଡ଼ି ବେନି ପାଣି କି ।।
ଚନ୍ଦନ ସଂସ୍କାର ସାରି ପ୍ରଭୁ ଅଙ୍ଗେ ଲାଗିକରି
ହରି ଭଦ୍ରା ସୁଦର୍ଶନ କମଳା ଘରଣୀ କି ।।
ହଡ଼ପ ନାୟକ ରହି ବିଡ଼ିଆ ପତ୍ରକୁ ବହି
କରାଇ ମଣୋହି ତହିଁ କମ୍ବୁଚକ୍ରପାଣି କି ।।
ଡ଼ାକଇ ଖୁଣ୍ଟିଆ ଦ୍ୱିଜ ମଣିମା ଭୋ ଦେବରାଜ
ଅଖିଳ ବ୍ରହ୍ମାଣ୍ଡ ନାଥ ପ୍ରଭୁମନ ଜାଣିକି ।।
ନିଜ ନିଜ ଗୁଣାବଳୀ ବୀଣା ନାଦେ କୁତୂହଳୀ
ପଳାଇ ଦୁରିତ ପାପ ହରିଧ୍ୱନି ଶୁଣି କି ।।
ସେକାଳେ କଳା ଶ୍ରୀମୁଖ ଶୁଣନ୍ତି ସକଳ ଦୁଃଖ
ଦର୍ଶନେ ପ୍ରସନ୍ନ ହୋଇ ରଖ ଦୁଃଖୀ ଶ୍ରେଣୀ କି ।।
ଆର୍ତ୍ତେ ଶ୍ରୀଚନ୍ଦନ ଭାଷେ ଚିନ୍ତାଜଳ ମଧ୍ୟେ ଭାସେ
କରୁଣା ନାବେ ବସାଇ କୂଳେ ରଖ ଆଣିକି ।।

---

ଓଡ଼ିଆ ସାହିତ୍ୟରେ ପିଣ୍ଡିକ ଶ୍ରୀଚନ୍ଦନ ଆଦୌ ଅପରିଚିତ କବି ନୁହନ୍ତି । ସେ ରଣପୁର ଅନ୍ତର୍ଗତ ସାନପଦର ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ସେ ଗୀତଗୋବିନ୍ଦ କାବ୍ୟର ବଙ୍ଗଳା ଅନୁବାଦ କରିବା ସଙ୍ଗେ ସଙ୍ଗେ ଭଜନ ଓ ଚଉପଦୀ ଆଦି ରଚନା କରିଛନ୍ତି । କବିଙ୍କ ସମୟ ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗ ବୋଲି ଅନୁମାନ କରାଯାଏ ।

ଝୀନବାସ - ସୂକ୍ଷ୍ମବସ୍ତ୍ର, ଦିଅଁଙ୍କ ଶ୍ରୀଅଙ୍ଗ ଲାଗି ପାଟଲୁଗା, ହଡ଼ପ ନାୟକ - ଶ୍ରୀଜଗନ୍ନାଥଙ୍କ ଅନ୍ୟତମ ସେବକ, ବିଡ଼ିଆ - ପାନ, କମ୍ବୁ - ଶଙ୍ଖ, ଖୁଣ୍ଟିଆ - ଶ୍ରୀଜଗନ୍ନାଥଙ୍କ ଅନ୍ୟ ଏକ ସେବକ, ଦୁରିତ - ଘୋର ପାପ ।



Digitized by PPRACHIN, SOA

# ୪୨

## ହାତୀ ଆସନ୍ତି ମୋ



ହାତୀ ଆସନ୍ତି ମୋ ଅଚଳ ମହାମେରୁ !
ଭକତି ଭାବକୁ ଆସନ୍ତି ହରି ଶ୍ରୀନୀଳକନ୍ଦରୁ ।
ପଦ ଦ୍ୟୁତି କଳା ଦୋହଲାଇ ମାଳା ଚନ୍ଦ୍ର ସୂର୍ଯ୍ୟ ବେନି ଆଖି,
ଭକ୍ତଜନମାନେ ମୁକତି ଲଭନ୍ତି କଳା ନୟନକୁ ଦେଖି । ହାତୀ ଆସନ୍ତି ମୋ ।।୧।।
ହାତୀର ଓଜ ବିସ୍ତାର ଭୁଜ ଶୋଭା ଅଣ୍ଟା ଗୋଟି ତାର ସରୁ,
ସଧୀରେ ସଧୀରେ ଚଲାଇ ଆଣନ୍ତି ଶ୍ରୀନୀଳଗିରି ମଧ୍ୟରୁ । ହାତୀ ଆସନ୍ତି ମୋ ।।୨।।
ବାହା ସୁବିସ୍ତାର ଗଳେ ବନମାଳ କଟିରେ କିଙ୍କିଣୀ ସାଜେ,
ଚରଣ କମଳ ବାଜେଣି ନୂପୁର ଝୁମୁକୁ ଝୁମୁକୁ ବାଜେ । ହାତୀ ଆସନ୍ତି ମୋ ।।୩।।
ବଜାଇ ମୃଦଙ୍ଗ ଭେରୀ ତୂରୀ ବାଦ୍ୟ ଶଙ୍ଖ ଧ୍ୱନି ନିରନ୍ତରେ,
ଦୁଲୁ ଦୁଲୁ ହୋଇ ଦୁଲକି ପଡ଼ନ୍ତି ପାଟ ମୁଚୁଳି ଉପରେ । ହାତୀ ଆସନ୍ତି ମୋ ।।୪।।
ମୃଦଙ୍ଗ ନିନାଦ ଅତି ହିଁ ଶବଦ କିଣି କିଣି ବାଦ୍ୟ ବାଜେ,
ବ୍ରହ୍ମାଣ୍ଡଯାକକୁ ଚଲାଇ ଆଣନ୍ତି ଚତୁରଙ୍ଗ ବଳ ସାଜେ । ହାତୀ ଆସନ୍ତି ମୋ ।।୫।।
ଦଇତାପତିଏ ଡ଼ୋର ଧରିଥାନ୍ତି ହୋଇଥାନ୍ତି ଏକ ମେଳ,
କେହି ବୋଲୁଥାନ୍ତି ମଣିମା ମଣିମା କେହୁ ବୋଲେ ଚାଲ ଚାଲ । ହାତୀ ଆସନ୍ତି ମୋ ।।୬।।
ଲକ୍ଷେ ପାଟଛତ୍ର ଉପରେ ଚାମର ଥରେ ବିଜେ କଲେ ହରି,
ଅଧମ ମାଗୁଣି ଶରଣ ପଶୁଛି ଗୀତ ସାତ ପଦ ସାରି । ହାତୀ ଆସନ୍ତି ମୋ ।।୭।।

---

ଭକ୍ତକବି ମାଗୁଣି ପଟ୍ଟନାୟକ ଖୁରୁଧା ଅନ୍ତର୍ଗତ ହଳଦିଆ ସ୍ଥିତ କୋଟପଲ୍ଲୀ ଗ୍ରାମରେ ଅଷ୍ଟାଦଶ ଶତାବ୍ଦୀରେ ଜନ୍ମ ଗ୍ରହଣ କରି ପ୍ରସିଦ୍ଧ ରାମକାବ୍ୟ 'ରାମଚନ୍ଦ୍ର ବିହାର' ଲେଖିଛନ୍ତି । ସେ କେତୋଟି ଭଜନ, ଚଉତିଶା ଓ ଚଉପଦୀ ମଧ୍ୟ ରଚନା କରିଛନ୍ତି ।

ଦ୍ୟୁତି - ଶୋଭା, ନିନାଦ - ଶବ୍ଦ, ଦଇତାପତି - ଶ୍ରୀଜଗନ୍ନାଥଙ୍କ ଅନ୍ୟତମ ସେବକ । ଶ୍ରୀଜଗନ୍ନାଥ ସ୍ନାନ ପୂର୍ଣ୍ଣିମା ହାତୀ ବେଶରେ ସୁଶୋଭିତ ହେଉଥିବାରୁ, କେତେକ ଭକ୍ତକବି ତାଙ୍କୁ 'ହାତୀ' ବୋଲି ସମ୍ବୋଧନ କରିଛନ୍ତି ।

Digitized by PPRACHIN, SOA

## ୪୩

### ଚିତ୍ତ ଚିନ୍ତ ଜଗନ୍ନାଥ କଳାମୁଖକୁ

ଚିତ୍ତ ଚିନ୍ତ ଜଗନ୍ନାଥ କଳାମୁଖକୁ ।
ପାଇବୁ ପରମାନନ୍ଦ ସୁଖକୁ ରେ ।
ଅରୁଣ ରଙ୍ଗ ଅଧର ଆହା କେଡ଼େ ମନୋହର
ହସୁଥିଲା ପ୍ରାୟେ ଦିଶେ ପାଖକୁ ରେ ।।
ପ୍ରବଳ ବିପୁଳ ବାହା ଟେକିବା ଭଙ୍ଗିକି ଚାହାଁ
ଯାହା ତଳେ ରଖନ୍ତି ଅରକ୍ଷକୁ ରେ ।।
ସୁନିଷ୍ଚଳ ଚକାଆଖି ଚାହିଁଲେ କରି ନିରେଖି
ନ ଯିବୁ ଯମ ଦଣ୍ଡ ପାଖକୁ ରେ ।।
କରୁଣାରେ ପରିପୂର୍ଣ୍ଣ ଢାଳେ ପଙ୍କଜ ନୟନ
ତାରୁଛନ୍ତି ପାପୀ ଲକ୍ଷ ଲକ୍ଷକୁ ରେ ।।
ଅଟନ୍ତି ସେ ଭାବଗ୍ରାହୀ ଶ୍ରୀବତ୍ସ ପାଦକୁ ବହି
ଅଛନ୍ତି ଅନାଉ କିନା ବକ୍ଷକୁ ରେ ।।
କର୍ଣ୍ଣେ ମକର କୁଣ୍ଡଳ ଝଲକେ ଗଣ୍ଡମଣ୍ଡଳ
ନାହିଁ ତ ଉପମା ଦେବା ଲକ୍ଷ୍ୟକୁ ରେ ।।
କପୋଳେ ରତନ ଚିତା ଦେଖି ଧରି ନୋହେ ଚେତା
ତଥିପରେ ହେମ ରାହୁ ରେଖକୁ ରେ ।।
ବ୍ରଜନାଥ ବୋଲେ କାଳଦେବତା ନ ଧରୁ ବାଳ
କରିଥା କରୁଣାସିନ୍ଧୁ ପକ୍ଷକୁ ରେ ।।

---

କବି ବ୍ରଜନାଥ ବଡ଼ଜେନା ଖ୍ରୀ:ଅ:୧୭୩୦ ରେ ପୂର୍ବତନ ଢେଙ୍କାନାଳ ରାଜ୍ୟ କାବରା ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ବାଲୁକେଶ୍ୱର ପଟ୍ଟନାୟକ । 'ବଡ଼ଜେନା' ଥିଲା ତାଙ୍କର ରାଜଦତ୍ତ ପଦବୀ । କବି ବ୍ରଜନାଥ କେନ୍ଦୁଝର ରାଜ୍ୟରେ ରହି 'ଅମ୍ବିକା ବିଳାସ' ଶୀର୍ଷକ କାବ୍ୟ ରଚନା କରି ସେଠାକାର କବି ବଳଭଦ୍ର ଭଞ୍ଜଙ୍କ ନାମରେ ଭଣିତା କରିଥିଲେ । ସେ ମଧ୍ୟ ସମରତରଙ୍ଗ, ଚତୁରବିନୋଦ ଓ ଗୁଣ୍ଡିଚା ବିଜେ ପ୍ରଭୃତି କାବ୍ୟର ପ୍ରଣେତା ।



Digitized by PPRACHIN, SOA

## ୪୪

### ରତ୍ନସିଂହାସନ ମଉଡ଼ମଣି

ରତ୍ନସିଂହାସନ ମଉଡ଼ମଣିକି କହିବୁଟିକି କଥାଏ ।
ମହୋଦଧି କୂଳେ କଳ୍ପବଟ ମୂଳେ କରିଅଛନ୍ତି ବିଜୟେ ।ପଦ ।

ସେ ଚାନ୍ଦବଦନ ପଙ୍କଜଲୋଚନ ଆଉ କିମ୍ପା ଏଡ଼େ ଭୟେ
ଭାତ ନ ମିଳଇ ତୁଣ ନ ମିଳଇ ଲୁଣ ବିନା ବଡ଼ ଭୟେ ।୧।

ଅଧୁଲି ଭିତରେ ଟଙ୍କା ଗୁପ୍ତ ଅଛି ସଂସାର ଅନ୍ଧାର ମୟେ
ମୋହ ପାଇଁ କିଛି ଧନ ମାଗୁଅଛି ନ ଶୁଣ ଦେବାଧି ରାୟେ ।୨।

କିପରି ଦ୍ରୌପଦୀ ଲଜ୍ଜାକୁ ରଖିଲ ଏବେ କି ପାଶୋର ଯାଏ
ତୁମ୍ଭଙ୍କୁ ତୁମ୍ଭ ଭକ୍ତଗଣ ଅଟଇ ଯେବେ ନୋହିବଟି ନ୍ୟାୟେ ।୩।

ଛତିଆ ଗ୍ରାମରେ ରହି ହୀନ ହାଡ଼ି ଜଣାଉଛି ପଦ୍ମପାୟେ
ମୋହ କର୍ମକୁ ଯେ ବଧିର ହେଲ କି ନ ଶୁଣ ହେ ଦୟାମୟେ ।୪।



---

ଛତିଆବଟର ମହନ୍ତ ହାଡ଼ିଦାସ ଖ୍ରୀ:ଅ: ୧୭୭୨ରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ଗ୍ରାମ ଥିଲା ଯାଜପୁର ଅନ୍ତର୍ଗତ ଚମ୍ପାପୁର । ତାଙ୍କ ପିତାମାତା ବେମେଇ ଓଝା ଓ ଦେବକୀ ଦେବୀ ଜାତିରେ କମାର ଥିଲେ । ସେ ଶଙ୍ଖନାଭି, ମାଳିକା, ଅନନ୍ତ ଗୋଇ ଆଦି ପୁସ୍ତକ ତଥା ଭଜନ, ଚଉପଦୀ, ଜାମୁଡ଼ାଳି ଗୀତ, ମାଳଶ୍ରୀ (ଦେବୀ ଭଜନ) ଆଦି ରଚନା କରିଛନ୍ତି ।

ରତ୍ନସିଂହାସନ ମଉଡ଼ମଣି - ରତ୍ନସିଂହାସନରେ ବିଜେ କରିଥିବା ଶ୍ରୀଜଗନ୍ନାଥ ମହାପ୍ରଭୁ ।
ମହୋଦଧି - ସମୁଦ୍ର ।

Digitized by PPRACHIN, SOA

## ୪୫

### ଆହେ ପ୍ରଭୁ କଳାଶ୍ରୀମୁଖ



ଆହେ ପ୍ରଭୁ କଳାଶ୍ରୀମୁଖ !
ତୁମ୍ଭ ରଥଯାତ ଦେଖି ନ ପାରିଲି,
ଦେବାରୁ ଦାରୁଣ ଦୁଃଖ ।।

କେତେ କେତେ ମହା ଭକତମାନଙ୍କୁ,
କଢ଼ାଇ ନେଇଛ ପଥ ।
ମୋତେ ଏତେବେଳେ ଏକା କରାଇଲ,
ଦେଖିବାକୁ ଅସମର୍ଥ ।।

ଯେବେ ନିକଟକୁ ନ ନେଲ ଗୋସାଇଁ
ମନେ କେଉଁ କଥା ପାଞ୍ଚି ।
ଏଇଠାରେ ତୁମ ରଥ ମୁଁ କରିବି,
ଆସିବ ନା ତୁମେ ଘୁଞ୍ଚି ।।

ଦେଖାଯାଉ ଭଲା ହଟିଆ ନାଗର,
କେତେ ଲଗାଇବୁ ହଟ ।
ନିଶ୍ଚୟ କରିବି ଛତିଆ ଗ୍ରାମରେ,
ତୋହରି କଳପବଟ ।।

କାଳକାଳକୁ ଏ' କଥା ରୁହାଇବି,
ଦେଖିବେ ସଂସାର ଜନେ ।
ହାଡ଼ିଆ କମାର ଆଣ୍ଠ କି ଭାଜିବ,
ଶ୍ରୀହରି ବୋଲି ବଦନେ ।।



Digitized by PPRACHIN, SOA

# ୪୬

## ଆସ ସଜନୀରେ

ଆସ ସଜନୀରେ, ଯିବା ଘୋଷ ଯାତ୍ରା ଦେଖି ।
ବିଜେ କରିଥିବେ ବଡ଼ ଦାଣ୍ଡେ ଚକାଆଖି ।

ବିନ୍ତାଳି ମଲ୍ଲବାଧର ଶ୍ରୀମୁଖଙ୍କୁ ରଙ୍ଗେ ।
ରାଜିଥିବ କ୍ଷଣପ୍ରଭା ପରି କଳା ମେଘେ । ।୧ । ।

ଗଭାକୁ କୁସୁମୀ ପାଗ ଢ଼ଙ୍ଗ ମାନିଥିବ ।
କରଡ଼ିଆ ଧଣ୍ଡାମାଳ ହୃଦେ ଲ୍ରୀଡୁଥିବ । ।୨ । ।

ରତନ କୁଣ୍ଡଳ ଦୁରୁ ଚଳୁଥିବେ ଗଣ୍ଡେ ।
ଗୁରୁ ଶୁକ୍ର ବେନି ଉଦେ ଜାଗେ ନଭଖଣ୍ଡେ । ।୩ । ।

ତ୍ରିକଛ ପିନ୍ଧା ବସନ ଆଡ଼ମ୍ବର ଛବି ।
କି ସୁନ୍ଦର ଦିଶୁଥିବ କୁଞ୍ଜ ଆଗେ ଲମ୍ବି । ।୪ । ।

ଭାଲେ ନବରତ୍ନଚିତା ମଣି ବିଭୂଷଣ ।
ଦୂରକୁ ଝଟକୁଥିବ କି ତାରକାଗଣ । ।୫ । ।

ମଣ୍ଡଣି ସେ ହୋଇଥିବ ରଥ ନ ନାଭାବେ ।
ଝରା ବଉଳା ପିତୁଳା ବହ୍ନି ତାବେଠାବେ । ।୬ । ।

ଉଡ଼ାଇ ପାଟପତନୀ ବସନକୁ ଛନ୍ଦି ।
ଚଉପାଶେ ତ୍ରୋଣା ମାଳମାନ ଥିବେ ବାନ୍ଧି । ।୭ । ।

ଗରୁଡ଼ଧ୍ୱଜ ବିରାଜ ଉଡୁଥିବ ଖରେ ।
ଦେଖିଲେ ଦୂରୁ ପାତକ ପଳାଇବ ଡ଼ରେ । ।୮ । ।





Digitized by PPRACHIN, SOA



ଚଳିବାରେ ରଥ କିଟିକିଟି ଘୁଂ ଶବଦ ।
ହୃଦୟକୁ କରି ଦେଉଥିବ ସେ ପ୍ରମୋଦ ।।୯।।

କେତେ ରଙ୍ଗେ ବାଉଥିବେ ଘଣ୍ଟକୁ ଘଣ୍ଟୁଆ ।
ନାଟ କରୁଥିବେ ଆସି ଛାମୁରେ ନାଟୁଆ ।।୧୦।।

ଗହଳେ ଲୋକର ମୁଖ କୋଳାହଳ ଧ୍ୱନି ।
ଚହଳ ଉଚ୍ଛୁଳୁଥିବ ସିନ୍ଧୁଘୋଷ ଜିଣି ।।୧୧।।

ଚଳୁଥିବ ଖଦି ପଙ୍ଖା ଚାମର ବିଞ୍ଚଣି ।
ଧରିଥିବେ କେହୁ ତ୍ରାସ କେ ଛତ୍ର ଆଡ଼େଣି ।।୧୨।।

ହରି ହରି ଡ଼ାକ ପଡ଼ୁଥିବ ଚଉପାଶେ ।
ଚାହିଁଥିବେ ଜଗବନ୍ଧୁ ଥିରେ ସହରଷେ ।।୧୩।।

କେତେ କେତେ ରଙ୍ଗେ କେତେ ବାଜୁଥିବ ବାଜା ।
ଛେରା କରୁଥିବେ ଗଜପତି ମହାରାଜା ।।୧୪।।

ଏଥିରୁ ଉତ୍ସବ ନାହିଁ ବ୍ରହ୍ମାଣ୍ଡେ ସୁପ୍ରଭା ।
କହେ ଭଞ୍ଜ ଶ୍ୟାମ ନେତ୍ର ପବିତ୍ରକରିବା ।।୧୫।।

---

ରାଜକବି ଶ୍ୟାମସୁନ୍ଦର ଭଞ୍ଜ ଖୁରୁଧା ନିକଟବର୍ତ୍ତୀ ହରିଦ୍ରା ଦୁର୍ଗ ବା ହଳଦିଆଗଡ଼ ରାଜାଥିଲେ । ତାଙ୍କ ସମୟ ଊନବିଂଶ ଶତାବ୍ଦୀର ପ୍ରଥମଭାଗ । ସେ 'ବସନ୍ତ କ୍ରୀଡ଼ା ସମୁଜ୍ଜ୍ୱଳ ରସାବଳୀ' ପ୍ରଭୃତି କେତେ ଖଣ୍ଡି ପୁସ୍ତକ ଓ ଦୁଇଶହରୁ ଅଧିକ ଶ୍ରୀଜଗନ୍ନାଥ ଓ ଅଁଣାକାର ଭଜନ ଲେଖିଛନ୍ତି ।

ଘୋଷଯାତ୍ରା - ରଥଯାତ୍ରା, କ୍ଷଣପ୍ରଭା - ବିଜୁଳି, ଚିରାଳ - ପତକା ।



Digitized by PPRACHIN, SOA

## ୪୭

### ସଜନି ଚାଲ ଦେଖିବା



ସଜନି ଚାଲ ଦେଖିବା,
ପହଣ୍ଡି ବିଜୟେ ବଳିୟାରଭୁଜ ହେବେଣି ।
ସୁରଙ୍ଗ ଅଧର ଶୋଭା ଦିଶୁଥିବ ସଜନୀ
ଭାସୁଥିଲା ପରି ଜଳେ ପଦ୍ମରାଗ ତରଣୀ ।
ଛନ୍ଦି ହୋଇଥିବେ ପ୍ରଭୁ ପିନ୍ଧି ପୀତ ପତନି
ଝୁଲୁଥିବ ମସ୍ତକରେ ପୁଷ୍ପ ଝରା ମଣ୍ଡନି ।
ଲାଗିଥିବ ଭାଲେ ନବରତ୍ନ ଚିତା ସାଜେଣି
ଗଗନେ ଉଦିତ ହେଲା ପରି ପ୍ରାତଃ ତରଣି ।
ଅଗ୍ରେ ମିଳି କରୁଥିବେ ନୃତ୍ୟ ଢ଼ଳି ଖଟଣି
ଆସୁଥିବେ ପ୍ରଭୁ ରଙ୍ଗେ କରି ଢ଼ାଳି ଚାହାଁଣି ।
ବାଜୁଥିବ ବେଣୁ ବୀଣା ତାଳି ତାଳ ଖଞ୍ଜଣି ।
ଉଡୁଥିବ ଶିର ପରେ ଶ୍ୱେତ ଛତ୍ର ଆଢ଼େଣି
ପଡୁଥିବ ଖଦିଚୀର ଝୁଲା ଦିବ୍ୟ ବିଞ୍ଚଣି ।
ରହିଥିବେ ତପୀ ଜପୀ ପୁରୀ ଦଣ୍ଡୀ ଭଜନୀ
କିଏ ଧ୍ୟାୟୁଥିବ କିଏ କରୁଥିବ ଦୟିନି ।
ସଙ୍ଗେ ଥିବେ ଭାଇ ବଳରାମ ଭଦ୍ରା ଭଗିନୀ
ଆଜ ଚକାନୟନର ଚତୁରଙ୍ଗ ସାଜେଣି ।
କହେ ଶ୍ୟାମ ଏ ଉତ୍ସବ ନାହିଁ ତିନି ଧରଣୀ
ଧନ୍ୟ ହେବ ନେତ୍ର ତୋର ଆଗେ ପ୍ରାଣ ମିତଣି ।

---

ପଦ୍ମରାଗତରଣୀ – ଈଷଦ୍ ଅରୁଣବର୍ଣ୍ଣର ନୌକା. ପୀତପତନି – ହଳଦିଆ ପାଟ. ପ୍ରାତଃତରଣି– ସକାଳର ସୂର୍ଯ୍ୟ. ଚତୁରଙ୍ଗ ସାଜେଣି – ଘୋଡ଼ା ହାତୀ ରଥ ଓ ପଦାତିକ ସହିତ ପ୍ରସ୍ତୁତ ।



Digitized by PPRACHIN, SOA



# ୪୮

## ସଜନି ଚାଲ ଦେଖିବା

ସଜନି ଚାଲ ଦେଖିବା,
ଜଗନ୍ନାଥ ମହାପ୍ରଭୁ ଅପହୁତ୍ ହେବେଣି ।
ଅରୁଣ ଉଇଁଲେ ରଙ୍ଗବର୍ଣ୍ଣ ଦିଗ ହେଲେଣି ।
ପତିତପାବନ ସିଂହାସନେ ବିଜେ ହେଲେଣି ।।୧।।

ନଗର ଭିତରେ ଲୋକ ଗହଳ ତ ହେଲେଣି
ନିଯୋଗ ସେବକ ସବୁଠାଇଁ ଭେଟ ହେବେଣି ।।୨।।

କୁକ୍‌କୁଟ ଡ଼ାକୁଛି ଉଜାଗର ପକ୍ଷୀ ହେଲେଣି ।
କର୍ପୂର ଆଳତି ବନ୍ଦାପନା ପ୍ରଭୁ ହେବେଣି ।।୩।।

ଜଳିବାର ଦୀପ ଶିଖା ମଳିନ ତ ହେଲେଣି ।
ପହୁଡ଼ ପଲଙ୍କ ତୂଳିଶେଯ ତୋଳା ହେବେଣି ।।୪।।

ସରସୀ ବକୁଳ ଦର ବିକଶିତ ହେଲେଣି ।
ମାଜଣା ବଢ଼ାଇ ତତ୍‌ପକୁ ଲାଗି ହେବେଣି ।।୫।।

ଗଗନେ ନକ୍ଷତ୍ର ପନ୍ତି ପ୍ରଭା ଅସ୍ତ ହେଲେଣି ।
ବାଜୁଅଛି ଘଣ୍ଟ ଭକ୍ତଗଣ ମେଳ ହେବେଣି ।।୬।।

ଶୁଭୁଅଛି ଡ଼ାକ ଶମ୍ଭୁଆଳେ ମାଳୀ ହେଲେଣି ।
ଲୋକନାଥେ ଚଉକୀରୁ ଛାଡ଼ି ବିଜେ ହେବେଣି ।।୭।।

ଭଣେ ଭଞ୍ଜଶ୍ୟାମ ନିଶି ଅବଶେଷ ହେଲେଣି ।
ଜଗ ମୋହନରେ ଲୋକ ଗହଳ ତ ହେଲେଣି ।।୮।।

---

ଅପହୁତ୍ - ଶ୍ରୀମନ୍ଦିର ଦ୍ୱାର ଖୋଲିବା, ଅରୁଣ - ସୂର୍ଯ୍ୟଙ୍କ ସାରଥି, ଶମ୍ଭୁଆ - ଶିବମନ୍ଦିର ।



Digitized by PPRACHIN, SOA

# ୪୯

## ଜୟ,ଜୟ, ଜଗନ୍ନାଥ



ଜୟ ଜୟ ଜଗନ୍ନାଥ ଚଢ଼ି ନନ୍ଦିଘୋଷ ରଥ
ଅନ୍ତର୍ଯ୍ୟାମୀ ଅନ୍ତର୍ଗତ ବାରତା ଜାଣ
ଦୁଃଖୀ ଜଣାଇଲେ ଦୁଃଖ କେବେ ହେଁ ନୁହଁ ବିମୁଖ
ଦୁଃଖ ଏଡ଼ି ସୁଖ ତାକୁ ଦିଅ ପ୍ରମାଣ
ସେହି ପ୍ରଭୁ ନୁହଁ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ।୧।

ପୂର୍ବେ ନରସିଂହ ରୂପେ ସ୍ତମ୍ଭରୁ ବାହାରି ଆପେ
ହିରଣ୍ୟ ରାଜାର ହୃଦ ନଖେ ଚିରିଲ
ତା' ପୁତ୍ର ପ୍ରହଲ୍ଲାଦକୁ ସ୍ୱର୍ଗେ ଇନ୍ଦ୍ର କଲ ତାକୁ
ଧ୍ରୁବ କୁମରକୁ ଅଭିମାନ ତାରିଲ
ସେହି ପ୍ରଭୁ ନୁହଁ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନଶୁଣ ଏବେ ।୨।

ଦୁର୍ଯ୍ୟୋଧନ ସଭାତଳେ ଦ୍ରୌପଦୀଙ୍କୁ ନେଲାବେଳେ
ସତୀ ବିବସନ କାଳେ ଚିନ୍ତିଲେ ଯହୁଁ
ଆତଙ୍କ ନାଶନ ବାନା ବିପଦକୁ ବଜ୍ରସେନା
ପଞ୍ଚାବନ କୋଟି ବସ୍ତ୍ର ଦେଇଟି କାହୁଁ
ସେହି ପ୍ରଭୁ ନୁହଁ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନଶୁଣ ଏବେ ।୩।

x x x x x x



Digitized by PPRACHIN, SOA



ଦୀନ ଅଭିମନ୍ୟୁ ମାନ କହିଲେ କିମ୍ପା ନ ଶୁଣ
ଆହେ ପ୍ରଭୁ ଶଙ୍ଖ ଚକ୍ର ସାରଙ୍ଗଧର
ଲକ୍ଷେ ଯୋଜନରେ ଥାଇ ଡ଼ାକିଲେ ଶୁଣ ଗୋସାଇଁ
ତେଣୁକରି ଭରସାଟି ଅଛି ମୋହର ।
ସେହି ପ୍ରଭୁ ନୁହଁ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ।।



---

ଭକ୍ତକବି ଅଭିମନ୍ୟୁ ସାମନ୍ତସିଂହାର ଖ୍ରୀ:ଅ: ୧୭୫୭ ମସିହାରେ ଯାଜପୁର ନିକଟବର୍ତ୍ତୀ ଗୋଳକୁଣ୍ଡ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ଜମିଦାରୀ ଥିଲା ବାଲିଆ । ତାଙ୍କ ମାତାପିତାଙ୍କ ନାମ ଯଥାକ୍ରମେ ତୁଳସୀଦେବୀ ଓ ଇନ୍ଦ୍ରଜିତ ସାମନ୍ତସିଂହାର ଥିଲା । ସେ 'ବିଦଗ୍ଧଚିନ୍ତାମଣି' ସମେତ ବହୁ ପୁସ୍ତକ ଓ ଅନେକ ଭଜନ ତଥା ଚଉପଦୀର ପ୍ରଣେତା ରୂପେ ଖ୍ୟାତି ଅର୍ଜନ କରିଥିଲେ । ସେ ଖ୍ରୀ:ଅ: ୧୮୦୮ ପର୍ଯ୍ୟନ୍ତ ଜୀବିତ ଥିଲେ ।







Digitized by PPRACHIN, SOA

## ୪୦

### ଓଡଶୀଳ ଭୋଜ-ଗଜ



ଓଡଶୀଳ ଭୋଜ-ଗଜ-ଜୀବନ-ହରଣେ ତେଜ
ଅର୍ପଣ କଲ କୃପଣ ନୋହି
ଗଭୀର ଜଳେ କୁମ୍ଭୀର ଗଳ ଗ୍ରହଣେ କୁମ୍ଭୀର
ଜୀବନ ରକ୍ଷା କଲ କକ୍ଷା ବହି
ହେ ନୀଳାଚଳ-କଳାକର !
ସତ କି ଏ ମିଛ ?
ନେଲ ଯାହା ଦେଲ ତାହା ଏଥକୁ କିମ୍ପାଇଁ ମହା-
ଦାତା ପଣେ ପତାକା ବାନ୍ଧିଛ ହେ ।୧ ।

ଦଳି ବଳିଷ୍ଠ ବାଳୀକି ଅକଳିତ ବିଭୂତିକି
କଳିତ କରରେ କରିଥିଲ
ନମାନି କରି ରାମାକୁ ଅକିଞ୍ଚନ ସୁଦାମାକୁ
ବିପୁଳ ସମ୍ପଦେ ମଣ୍ଡିଦେଲ
ହେ ନୀଳାଚଳ - କଳାକର
ସତ କି ଏ ମିଛ ?
ନେଲ ଯାହା ଦେଲ ତାହା ଏଥକୁ କିମ୍ପାଇ ମହା-
ଦାତା ପଣେ ପତାକା ବାନ୍ଧିଛ ହେ ।୨ ।

ଗୋକୁଳ-କଳଧଉତ- ଗଉରାଙ୍ଗୀଙ୍କ ମହତ
ନେଇଥିବା ସକାଶରୁ କରି
ଦ୍ରୁପଦ ନୃପ ନନ୍ଦନା ମହତ ହର ବେଦନା
ବିନାଶନେ ହେଲ ଧନ୍ୱନ୍ତରୀ
ହେ ନୀଳାଚଳ କଳାକର !
ସତ କି ଏ ମିଛ ?
ନେଲ ଯାହା ଦେଲ ତାହା ଏଥକୁ କିମ୍ପାଇଁ ମହା-
ଦାତାପଣେ ପ୍ରତକା ବାନ୍ଧିଛ ହେ ।୩ ।



Digitized by PPRACHIN, SOA



ପାତକୀ ମୁକୁଟ ଶ୍ରେଣୀ ଶିରୋମଣି ଯଦୁମଣି
ମନ ତିଳେ ଦେଇ ନ ପାରିବ
ଏହା ଉଦ୍ଧାରଣେ ଯେବେ ଚିତ୍ତ ଦେଇ ପାର ଲବେ
ତେବେ ସିନା ଦାତା ବୋଲାଇବ
ହେ ନୀଳାଚଳ କଳାକର !
ସତକି ଏ ମିଛ ?
ନେଲ ଯାହା ଦେଲ ତାହା ଏଥକୁ କିମ୍ପାଇଁ ମହା-
ଦାତା ପଣେ ପତାକା ବାନ୍ଧିଛ ହେ ।୪ ।

---

ଉତ୍କଳ ଘଣ୍ଟ ଯଦୁମଣି ମହାପାତ୍ର ଖ୍ରୀ:ଅ: ୧୭୯୫ରେ ଗଞ୍ଜାମ ଜିଲ୍ଲାର ଆଠଗଡ଼ରେ ଜନ୍ମ ଗ୍ରହଣ କରି, ନୟାଗଡ଼ ରାଜାଙ୍କ ପୃଷ୍ଠପୋଷକତା ଲାଭ କରି ସେ ଇଙ୍ଗାମାଟିରେ ଶେଷ ଜୀବନ ଅତିବାହିତ କରିଥିଲେ । ଜଣେ ସୁଖ୍ୟାତ ହାସ୍ୟରସିକ ଭାବରେ ଓଡ଼ିଶାରେ ସର୍ବତ୍ର ପରିଚିତ ଥିଲେ । ତାଙ୍କୁ ଓଡ଼ିଶାର ବୀରବଲ୍ ବୋଲି କୁହାଯାଇପାରେ । ତାଙ୍କ ଲିଖିତ ରାଘବ ବିଳାସ ଓ ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ପାଠକ ପାଠିକାଙ୍କ ମହଲରେ ସୁପରିଚିତ । ସେ ମଧ୍ୟ ଅନେକ ଚଉପଦୀ, ଜଣାଣ ଓ ଭଜନ ରଚନା କରିଛନ୍ତି ।

ଓଜଶୀଳ - ମହାଶକ୍ତିଶାଳୀ, ଭୋଜଗଜ - କଂସ, କକ୍ଷା - ଛିଦ୍, କଳାକର - ଚନ୍ଦ୍ର, କଳଧଉତ - ସୁନା, ଧନ୍ୱନ୍ତରୀ - ଦେବବୈଦ୍ୟ, ଅକିଞ୍ଚନ - ଗରିବ, ରମା - ଲକ୍ଷ୍ମୀ, ଦ୍ରୁପଦନୃପନନ୍ଦନା - ପଞ୍ଚପାଣ୍ଡବଙ୍କ ପତ୍ନୀ ଦ୍ରୌପଦୀ, ଅକଳିତ ବିଭୂତି - ଅମାପ ସମ୍ପତ୍ତି ।



Digitized by PPRACHIN, SOA

## ୪୧

### ଅନୁସରିତ



ଅନୁସରିତ,
ପ୍ରଭୁ କାଳଯାକ ଗଲା ସରି ତ ।
କଣ ବିତରଣ କଲେ କେତେ ଉଣା
ହୁଅନ୍ତା କରୁଣା-ସରିତ ।।

ଅଶରଣ-ଜନ-ବନ୍ଧୁପଣ ଯଶ
ସଂସାରେ ହୋଇଛି ଉଦିତ ।
ପଥର ହୋଇ ପଥରେ ପଡ଼ିଥିଲା
ଅହଲ୍ୟାକୁ ଦେଲ ତାରି ତ ।।

ପାଞ୍ଚାଳୀକି ଦୁଃଶାସନ ଘଞ୍ଚାଳିଲା
ବଞ୍ଚାଇଲ ବାସ ଦେଇ ତ ।
ଘୁଞ୍ଚାଇଲ ନାହିଁ ମୋ' ଛାର କଦନ
ପୋଛାଇଲ ନେତ୍ରୁ ବାରି ତ ।।

କାହିଁ ଥିଲା ଚକ୍ର କାହିଁ ଥିଲା ନକ୍ର
ପଲକ ପତନ ନୋହୁ ତ ।
ଛିଡ଼ିଗଲା ମଥା ରହିଗଲା କଥା
ଡ଼ାକିଲା ମାତ୍ରକେ କରୀ ତ ।।

କାଳକିଙ୍କର ଭୟରେ ଅଜାମିଳ
ପୁତ୍ର ଉପଚାରେ ଡ଼ାକି ତ ।
ପରମ ପଦ ପାଇଲା ଆପଣଙ୍କ ନାମ
ମହିମା ଏପରି ତ ।।



Digitized by PPRACHIN, SOA



ନିରୁପାଧି-କୃପାକର ବୋଲି ବିଧି
ଭବାଦିରେ ଥାଉ କଥିତ ।
ମୁଁ କଲା ଦୋଷ କି ନାଶିଛ କି ବକୀ
ବିଷ ପିଆଉ ତା' ଦୁରିତ ।।

ଗୋପାଳକୃଷ୍ଣ କହେ ଜଗନ୍ନାଙ୍କଳ
ଯାହା କରିବ ତୁମ୍ଭ ଚିତ୍ତ ।
ଆପଣା କୃପାଳୁପଣକୁ ବଳି ମୋ
ଦୁଷ୍କୃତ ନୁହଇ ଭାରି ତ ।।

---

କବି ଗୋପାଳକୃଷ୍ଣ ପଟ୍ଟନାୟକ ଖ୍ରୀ:ଅ: ୧୭୮୫-୧୮୫୬ ମଧ୍ୟରେ ପାରଳାଖେମୁଣ୍ଡିରେ ବନବାସୀ ଓ ଲଳିତା ଦେବୀ ପୁତ୍ର ରୂପେ ପ୍ରଖ୍ୟାତ ଥିଲେ । ରାଧାକୃଷ୍ଣ ଓ ଶ୍ରୀଜଗନ୍ନାଥଙ୍କ ସମ୍ପର୍କରେ ସେ ବହୁ ଚଉପଦୀ ଓ ଭଜନ ରଚନା କରିଥିଲେ ।

୧-ଘଣ୍ଟାଳିଲା-ଟଣାଓଟରା କଲା, ୨- କଦନ-ଦୁଃଖ, ୩- କାଳକିଙ୍କର-ଯମଦୂତ, ୪- ନିରୁପାଧି କୃପାକର-ଅହେତୁକ କରୁଣାର ଖଣି, ବକୀ-ବକାସୁର ଭଉଣୀ-ପୂତନା ।



Digitized by PPRACHIN, SOA

## ୫୨

# କେହି ସରିକି

କେହି ସରିକି ।
ପ୍ରଭୁପଣେ ନୀଳାଦ୍ରିକେଶରୀ କି ।।
ଯା'ଠାରେ ପୂରିଛି ଦୁଃଖୀଜନ ଦୟା
ନଖଠାରୁ ଶିଖା ସରିକି ।।
କି କହିବା ଆଉ ତାଙ୍କ ଶ୍ରୀଚରଣ
ଅନୁସରଣ ଚାତୁରୀ କି ।
ବଜାଉ ଅଛନ୍ତି ବିଭୀଷଣ ଆଗେ
ଜଗତବିଜୟ ତୂରୀ କି ।।
ସାନକୁ ବଡ଼ କରିବାରେ ଉଡ଼ାଉ ଅଛନ୍ତି
ଧ୍ୱଜମଞ୍ଜରୀ କି ।
ଦେଖ ନାଗ ନର ଗନ୍ଧର୍ବ କିନ୍ନର
ଉପରେ ଧ୍ରୁବ ନଗରୀ କି ।।
କି କହିବି ତାଙ୍କ ପୀରତି କରିବା
କୀରତି-ଚନ୍ଦ୍ର ମାଧୁରୀ କି ।
ରଙ୍କବିପ୍ରପାଦ ଧୁଆଇ ଯା' ଦେଲେ
ରମା କରେ ରତ୍ନଝରୀ କି ।।
କ୍ଷମା ସାଗର ଯେ ତାହାଙ୍କୁ ଡ଼ାକିଲେ
କାଳକିଙ୍କରଙ୍କୁ ଡ଼ରି କି ।
ବୋଲେ କବିସୂର୍ଯ୍ୟ ଆନ ଉପାୟକୁ
ପେଲିଦିଅ ଗିରିଦରୀ କି ।।



---

କବିସୂର୍ଯ୍ୟ ବଳଦେବ ରଥଙ୍କ ପିତା ଥିଲେ- ଉଜ୍ଜଳ ରଥ । ସେ ଖ୍ରୀ:ଅ: ୧୭୮୯-୧୮୪୫ ପର୍ଯ୍ୟନ୍ତ ଆଠଗଡ଼ (ଗଞ୍ଜାମ), ଜଳନ୍ତର (ଆନ୍ଧ୍ରପ୍ରଦେଶ) ଓ ପୁରୀ ଗଜପତି ରାଜାଙ୍କ ଦରବାରରେ ସୁଖ୍ୟାତି ଅର୍ଜନ କରିଥିଲେ । ସେ ଥିଲେ ଓଡ଼ିଶୀ ସଙ୍ଗୀତର ପ୍ରାଣ ପ୍ରତିଷ୍ଠାତା । ତାଙ୍କ ରଚିତ ଚଉପଦୀ, ଭଜନ, ଚମ୍ପୂ ଓ କାବ୍ୟ ଉତ୍କଳର ଘରେ ଘରେ ପ୍ରଚଳିତ ।

୧- ନୀଳାଦ୍ରିକେଶରୀ-ଶ୍ରୀଜଗନ୍ନାଥ, ୨- ବିଭୀଷଣ ପ୍ରତିଦିନ ଶ୍ରୀଜଗନ୍ନାଥଙ୍କ ଦର୍ଶନକୁ ଆସନ୍ତି ବୋଲି ଶ୍ରୀକ୍ଷେତ୍ରରେ ବିଶ୍ୱାସ ରହିଛି, ୩- ଧ୍ରୁବ ନଗରୀ- ବିଷ୍ଣୁଙ୍କ ଅନୁଗ୍ରହରୁ ବାଳକ ଧ୍ରୁବ ସତ୍ୟଲୋକ ଉପରେ କଲ୍ପକଳ୍ପ ଧରି ରହିଛନ୍ତି । ତାହା ଧ୍ରୁବଲୋକ ନାମରେ ପୁରାଣ ପ୍ରସିଦ୍ଧି ରହିଛି, ୪- ରଙ୍କ ବିପ୍ର-ସୁଦାମା ବ୍ରାହ୍ମଣ, ୫- କାଳକିଙ୍କର-ଯମଦୂତ ।



Digitized by PPRACHIN, SOA

## ୪୩

## କ୍ଷୀରମୟ ସିନ୍ଧୁ



କ୍ଷୀରମୟ-ସିନ୍ଧୁ-ଜେମା ପ୍ରାଣ ବନ୍ଧୁ ତୁମ୍ଭେ ତ ଜଗତ **ପତି**
ଟେକି-ସମଦୃଷ୍ଟି-ପତାକାକୁ ପୁଣି ଏ କି ପକ୍ଷପାତ-ରୀତି
ହେ ମହାପ୍ରଭୁ !
କେ କି କଲା ମୁଁ ନକଲି ?
କେ କି ଦେଲା ଅବା, ମୁଁ ଅବା ନ ଦେବା
**ଯେଣି** ଏତେ ସରି ହେଲି ହେ ।୧।
ମୃଗ ଯୁବତୀକୁ ରଖିଲ ଯେ ନାଶି ମୃଗୟୁ-ବିଦ୍ୱେଷ-ଦାଉ
ଚରଣ ପଙ୍କଜ ଶରଣ-ବିନା ସେ କିସ କରିଥିଲା ଆଉ
ହେ ମହାପ୍ରଭୁ !
କୁମ୍ଭୀର ଗ୍ରାସନ୍ତେ ଗାତ୍ର
ଜନେ କହିବାରେ ଅନେକ ପରଜା
ମନେକଲା ସିନା ମାତ୍ର ହେ ।୨।
ନୃପ ସଭା ମଧ୍ୟେ ଅସ୍ଥିର ହୁଅନ୍ତେ ଦ୍ରୁପଦ ସୁତା ଆବର
ଧ୍ୟାନରୁ ତ ଆନ କିଛି କରିବାର କାନ ଶୁଣୁ ନାହିଁ ମୋର
ହେ ମହାପ୍ରଭୁ !
ହିତେ ଯେ ଥାଅ ନିରତେ
ଲାଞ୍ଜ ଦେଇଥିଲେ କାଞ୍ଚନ କେତେ କି
ପାଞ୍ଚ ପଣ୍ଡୁ ରାଜ ସୁତେ ହେ ।୩।
କବି ରବି ରାୟଗୁରୁ ଯୋଡ଼ି କର ଯୁଗକୁ ଛାମୁରେ **କହେ** ।
ଭଲ ଅବା ମନ୍ଦ କରିବାକୁ ତ ମୁଁ ମୋହର ଆୟତ୍ତ ନୁହେଁ ।
ହେ ମହାପ୍ରଭୁ !
ସବୁ ତୁମ୍ଭ ଇଚ୍ଛା ସିନା,
ରଖ ବା ନ ରଖ ମୋହର ଗତି ତ **ପତିତପାବନବାନା ହେ** ।।

---

କ୍ଷୀରମୟ ସିନ୍ଧୁ ଜେମା - କ୍ଷୀର ସାଗରରୁ ଜାତ ହୋଇଥିବା **ଲକ୍ଷ୍ମୀ. ମୃଗୟୁ - ବ୍ୟାଧ,** ବିଦ୍ୱେଷ- ହିଂସାପୂର୍ଣ୍ଣ କାର୍ଯ୍ୟ, ଦ୍ରୁପଦସୁତା - ଦ୍ରୌପଦୀ, କାଞ୍ଚନ - ସୁନା ।



Digitized by PPRACHIN, SOA

## ୫୪

## ବାଧିଲା ଜାଣି କ୍ଷମା



ବାଧିଲା ଜାଣି କ୍ଷମା କର ନୋହିଲେ ରମା-
ରମଣ ଦଣ୍ଡେ ଦିଅ ଟାଳି
ତୁମ୍ଭଙ୍କୁ ଜଗନ୍ନାଥ ! ଆଜି ମୋ ମନୋରଥ
ପୂର୍ଣ୍ଣ କରିବି ଦେଇ ଗାଳି
ହେ କୃପାନିଧି !

କରୁଣା ସିନ୍ଧୁ ବୋଲି କହି
କହନ୍ତି ବୁଧେ ତ୍ୱରି ମରି
କାଳସର୍ପ ଆପଣ କବଳ କର ପ୍ରାଣ-
ପବନମାନଙ୍କୁ ସବୁରି ହେ ।।

ଜଳଧି ଅନ୍ତେ ନିଜ ଘର ଦେବାଧିରାଜ
ବୁଡ଼ାଇ ଦେଇଛ ଆପଣ
ତୁମ୍ଭରି ସିନା ଘେନ ଆଶ୍ଚର୍ଯ୍ୟ ନୁହେଁ ଆନ
ଜନର ଘରବୁଡ଼ା ପଣ
ହେ କୃପାନିଧି !

ଭୁଜଙ୍ଗ ସାମ୍ୟ ଆମ୍ଭ ତୁଲେ
ବତାଅ ବୋଲି ଆଜ୍ଞା ହେଲେ
ମୁଁ ନୁହେଁ ଘରବୁଡ଼ା ବତାଇବାକୁ ଛିଡ଼ା
ହୋଇଛି ବତାଇବି ବୋଲି ହେ ।।

ତାହାଙ୍କୁ ବୋଲି ଚକ୍ରୀ ଚକ୍ର ଥିବାରୁ ଚକ୍ରୀ
ତୁମେ ତ ବୋଲାଅ ମଣ୍ଡଳେ
ବେଭାରେ କୁଣ୍ଡଳୀ ସେ ଆପଣ ତ ବିଶେଷେ
ଭୂଷିତ ମକର କୁଣ୍ଡଳେ
ହେ କୃପାନିଧି !



Digitized by PPRACHIN, SOA



ଅଦୃଶ ହେବାରୁ ତା' ପାଦ
ତାହାକୁ ବୋଲି ଗୂଢ଼ ପାଦ
ଆପଣା ଚରଣ ତ ବିରଞ୍ଚି କି ଗୁପତ
କାହିଁ ତା ଠାରୁ ତୁମ୍ଭ ଭେଦ ହେ ।।

କହଇ କବିସୂର୍ଯ୍ୟ ନାଥ ନୁହ ଅଧୈର୍ଯ୍ୟ,
ଏଣିକି ମହତ ନ ଯାଉ ।
ମୁଁ ତୁମ୍ଭ ପରିଚାର ଜାଣିଲେ କି ବିଚାର,
ଇତର ନ ଜାଣନ୍ତୁ ଆଉ ।।
ହେ କୃପାନିଧି !

ଯେତେବେଳେ ମୋ ଅନ୍ତ ହେବ,
ଏତିକି ମାତ୍ର ମୋତେ ଦେବ,
ପରେତରାଟ ଦ୍ୱାର ସୀମାରୁ ପରିହାର,
କରାଇ ଯହିଁ ତହିଁ ନେବ ହେ ।।

---

ରମାରମଣ - ଲକ୍ଷ୍ମୀପତି ଶ୍ରୀଜଗନ୍ନାଥ, ବୁଧେ - ପଣ୍ଡିତମାନେ, ଜଳଧିଅନ୍ତେ - ସମୁଦ୍ର ମଧ୍ୟରେ, ଘରବୁଡ଼ାପଣ - ନିଜ ଗୃହ ନାଶ କରିବା ଅଭ୍ୟାସ, ଏଠାରେ ଶ୍ରୀକୃଷ୍ଣ ଯଦୁବଂଶକୁ ଧ୍ୱଂସ ସମୁଦ୍ରଜଳରେ ଦ୍ୱାରକାକୁ ନାଶ କରିଥିବାରୁ କବିଙ୍କର ତାଙ୍କ ପ୍ରତି ଆକ୍ଷେପ, ଭୁଜଙ୍ଗ - ସର୍ପ, ପରିଚାର - ସେବକ, ପରେତରାଟ - ଯମ, ପରିହାର - ଫେରାଇ ନେବା ।



Digitized by PPRACHIN, SOA

## ୫୫

### ଭକ୍ତେ ସୁଦୟା କରି



ଭକ୍ତେ ସୁଦୟା କରି ଦାରୁ ସ୍ୱରୂପ ଧରି
ବିଜୟେ ପରମାନନ୍ଦ ଶ୍ରୀନୀଳଗିରି ।।ଘୋଷା।।

ଏବେ ରଥ ଆରୋହୀ ସଙ୍ଗେ ଭଉଣୀ ଭାଇ
ଚରାଚର ତାରିବେ ଏ ଦର୍ଶନ ଦେଇ ।।୧।।

ଯାହା ଚିନ୍ତେ ମହାନ୍ତ ସେ ଏ ରୂପ ସମ୍ଭୂତ
ମୁଖ ଦେଖି ନାଶ କୋଟି କୋଟି ଦୁରିତ ।।୨।।

ପୂର୍ବେ ଶୁଣିତ ଅଛ ଏ ଟି ହୋଇଣ ମତ୍ସ୍ୟ
ସକୁଟୁମ୍ବେ ଉଦ୍ଧରିଲେ ମନୁର ବସ୍ତ ।।୩।।

ବହି କମଠ କୋଳ ଖର୍ବ ହୋଇ ଗୋପାଳ
ପର୍ଶୁରାମ ରୂପେ ନାଶି ନୃପ ସକଳ ।।୪।।

ରାମଚନ୍ଦ୍ର ହୋଇଣ ଏ ଟି ମାରି ରାବଣ
ସୀତା ଆଣି ଲଙ୍କା ଦେଲେ ଏ ବିଭୀଷଣ ।।୫।।

ବଳରାମ ବୋଲାଇ ଗୋପେ ଲୁଚିଲେ ଯାଇ
ଦୁର୍ବିନ୍ଦ ପ୍ରଳମ୍ବ ମରା ସେହିଟି ଏହି ।।୬।।

ଏହି ବୁଦ୍ଧ ହୋଇଲେ ଯାଗ ବିଧି ନିନ୍ଦିଲେ
ପୁଣି ହୟ ଚଢ଼ି ମ୍ଲେଛ କୁଳ ନାଶିଲେ ।।୭।।

ଏ ଟି ବ୍ରହ୍ମ ଶରୀରେ ରହେ ତରୁ ତଳରେ
ସମ୍ମୁଖରେ ଥରେ ଏ ବାହାରେ ବିହାରେ ।।୮।।



Digitized by PPRACHIN, SOA



ସ୍ଥିତି ଉତ୍ପତ୍ତି ନାଶ ଯାହା ତହୁଁ ପ୍ରକାଶ
କୋଟି କୋଟି ଯୁଗେ ଯେହୁ ନୁହଇ ନାଶ ।।୯।।

ହୀରା ନୀଳା କାଞ୍ଚନ ତିନି ମଣିକି ଜାଣ
ନେତ୍ର ସୂତ୍ରେ ଗୁନ୍ଥି ହୃଦେ ରଖ ସୁଜନ ।।୧୦।।

ତାପ ତ୍ରୟ ଦହନ ତିନି ଶିଖୀ କି ଜାଣ
ମୁଖ-କୁଣ୍ଡେ ବୋଲି ଜାତ ନାମ ଇନ୍ଧନ ।।୧୧।।

ଏହି ରୂପ ନାମରେ ମଜ୍ଜି ସାଧୁ ପୂର୍ବରେ
ନିଧି ସିଂହ ବୋଲେ ଗଲେ ବୈକୁଣ୍ଠ ପୁରେ ।।୧୨।।

---

ନିଧିସିଂହ ବା ଦୟାନିଧି ସିଂହ ପୂର୍ବତନ କୋରାପୁଟ ଜିଲ୍ଲାର ଅଧିବାସୀ ଏବଂ ଏହାଙ୍କ ସମୟ ଖ୍ରୀଷ୍ଟୀୟ ଊନବିଂଶ ଶତାବ୍ଦୀ । ଏହାଙ୍କ ରଚିତ କେତୋଟି ଭଜନ ଓ ଚଉପଦୀ ଓଡ଼ିଶାର ଗାୟକ ଗାୟିକାଙ୍କ ମଧ୍ୟରେ ସୁପରିଚିତ ।

ମହାନ୍ତ - ସାଧୁପୁରୁଷ, ଦୁରିତ - ପାପ, ମନୁରବସ୍ତ - ରାଜା ସତ୍ୟବ୍ରତଙ୍କୁ ନୌକାରେ ବସାଇ ମତ୍ସ୍ୟାବତାରୀ ବିଷ୍ଣୁ ଉଦ୍ଧାର କରିଥିଲେ । କୋଳ - ବରାହ ବା ଶୂକର, ତାପତ୍ରୟ - ଆଧିଭୌତିକ, ଆଧିଦୈବିକ ଓ ଆଧ୍ୟାତ୍ମିକ ତାପ । ପ୍ରସ୍ତୁତ ଭଜନଟି ଶ୍ରୀଜଗନ୍ନାଥଙ୍କ ଦଶାବତାରର ବର୍ଣ୍ଣନା କରାଯାଇଛି ।



Digitized by PPRACHIN, SOA

## ୪୬

### କଳାସିଂହ କାହିଁକି ଅଇଲୁରେ



କଳାସିଂହ ! କାହିଁକି ଅଇଲୁରେ ଶ୍ରୀ ନୀଳକନ୍ଦର ଛାଡ଼ି
ଭାଇ ଭଗ୍ନୀ ସଙ୍ଗେ ଘେନି କରି ରଙ୍ଗେ
ରହିଛୁ ଗୁଣ୍ଡିଚା ବାଡ଼ି ।ଘୋଷା ।
ହଜାର ସୁଆର ରାନ୍ଧି ପରଷିଲେ
ତେବେ ନ ପୂରଇ ପେଟ
ଏଠାରେ ସପୁରୀ,. ପଣସ, କଦଳୀ
ଖାଇ ହୋଇଯିବୁ ମୋଟ ।୧ ।
ଅରଗଳି ଗଳି ଯିବାକୁ ତେଣିକି
ବ୍ରାହ୍ମଣଙ୍କୁ ଆଜ୍ଞା ନାହିଁ ।
ଏବେ ନାନା ଜାତି ଯୁବତୀ ଆସିଣ
ଲଦୁଛନ୍ତି ଖଟୁ ବାହି ।୨ ।
ଇନ୍ଦ୍ର, ଚନ୍ଦ୍ର, ଦେବବୃନ୍ଦ ଆଜ୍ଞାକାରୀ
ବ୍ରହ୍ମା ପଢୁଥାନ୍ତି ବେଦ
ସେ ସୁଖ ନୋହିଲା ବୋଲି ଶୁଣୁଛୁକି
ଢ଼ଗ ଢ଼ମାଳିଆ ପଦ ।୩ ।
ବଡ଼ ଦେଉଳରେ ବଡ଼ ଧଣ୍ଡାମାଳ
ବଡ଼ ରଙ୍ଗଧଡ଼ି ପିନ୍ଧା
ଏବେ ଭାଇ ଭଗ୍ନୀ ତିନିଜଣ ଯାକ
ଖମ୍ବରେ ହୋଇଛ ବନ୍ଧା ।୪ ।
କର୍ପୂର ଚନ୍ଦନ ଚୁଆ ଚତୁଃସମ
ନ ରୁଚିଲା ସେ ସୁବାସ
ଏବେ ଶ୍ରୀ ଅଙ୍ଗରେ ଅଙ୍ଗୁଳ ବହଳେ
ଲାଗିଛି ହଳଦୀ କଷ ।୫ ।
ନାଡ଼ି, ବଡ଼ି, ଗଜା, ଖଣ୍ଡ ଖଇ, ଖଜା
ଏ ତୋତେ ନୋହିଲା ମିଠା
ମାଉସୀ ଦୁଆରେ ରହି ଚୋବାଇଲୁ
ପାଉଁସିଆ ପୋଡ଼ ପିଠା ।୬ ।



Digitized by PPRACHIN, SOA



ଘର ଘରଣୀକି ନ' ଦିନକୁ ପଗା
କରି ଆସିଅଛୁ କଣ୍ଟ
ସେ କଥା ପାଶୋରି ମୁଲାଉଛୁ ଗାଳି
ତୁ ବଡ଼ ବିଷମ ଖଣ୍ଟ ।୭ ।
ହେରା ଦିନ ପଦ୍ମ ରଥ ଭାଙ୍ଗି ଗଲେ
ଠାକୁରାଣୀ ହୋଇ କ୍ରୋଧ
ତେବେ ପୁଣି ତୋର ଚେତା ପଶୁନାହିଁ
ଯାଉଛୁ ଗହନ ନିଦ୍ର ।୮ ।
ଆନ ନାରୀ ପରି ନୁହଁନ୍ତି କମଳା
ସେ ଯେ ନ ସହନ୍ତି ଟାହି
ଘଡ଼ିଏ ଉଛୁର ହେଲେ ଘଉଡ଼ିବେ
ଘରେ ପୁରାଇବେ ନାହିଁ ।୯ ।
ସେ ମାନ କହିବୁ ଗୋକୁଳନାରୀଙ୍କୁ
ଠାରିବୁ ନୟନ କୋଣେ
ବଂଶୀ ବଜାଇବୁ ମନ ମଜାଇବୁ
ଖୋଜାଇବୁ କୁଞ୍ଜବଣେ ।୧୦ ।
ନିଷ୍ଚୟେ ତୋହର ମନେ ପଡ଼ିଗଲା
ବୃନ୍ଦାବନେ ଗାଈ ରଖା
ଦ୍ୱାଦଶ ବନରେ ବିହାର କରିବୁ
ସଙ୍ଗେ ଘେନି ଗୋପ ସଖା ।୧୧ ।
ଐଶ୍ୱର୍ଯ୍ୟ ସଂପତ୍ତି ନୀଳାଦ୍ରିରେ ସ୍ଥିତି
ବ୍ରଜେ ଏକା ପ୍ରେମ ଭାବ
ଜଣାଗଲା ତେବେ ଉଭୟ ପକ୍ଷରେ
ପ୍ରେମ ସେ ପରମ ଭାବ ।୧୨ ।
ଜଣାଅଛି ମୋତେ ପୂର୍ବରୁ ତୋହର
ସ୍ୱଭାବ ଗୋଟିଏ ଅଛି
ଠେକ ଲୋକ ଟେକ ଟିକିଏ ନ ରଖୁ
ଦୀନରେ ଦୟା ଶ୍ରୀବତ୍ସି ।୧୩ ।
ହରଙ୍କୁ ମୋହିନୀ ରୂପେ ଭୁଲାଇଲୁ
ବ୍ରହ୍ମାଙ୍କୁ ବତ୍ସା ହରଣେ
ସୁନାସୀର ଗର୍ବ ଚୂନା କରି ଦେଲୁ
ଗୋମତ-ଗିରି ଧାରଣେ ।୧୪ ।



Digitized by PPRACHIN, SOA

ଦନ୍ତକ୍ଷତ ଚୂତ ଶବରଣୀ ଦେଲା
ଖାଇଲୁ ତା'ର ଅଇଁଠା
ଶୋଇଲା ଶେଯରେ ଶ୍ରୀବତ୍ସ ବ୍ରାହ୍ମଣ
ମାଇଲା ପରା ଗୋଇଠା ।୧୫ ।
ଭଲ ଭଲ ଲୋକେ ଦେଉଳକୁ ଗଲେ
ପଣ୍ଡା ମାରନ୍ତି ଘଉଡ଼ି
ଏବେ ନୀଚ ଲୋକେ ଦରଶନ କରି
ଝିଙ୍କନ୍ତି ରଥ ଦଉଡ଼ି ।୧୬ ।
ନୋହିଲେ କାହିଁକି- ଭକତ ବତ୍ସଳ
ନାମ ଦୀନଜନ ବନ୍ଧୁ
ପତିତମାନଙ୍କୁ ଦରଶନ ଦେଇ
ଉଦ୍ଧାରିଲ ଭବସିନ୍ଧୁ ।୧୭ ।
ନାନା ନଟକୂଟ ନବରଙ୍ଗ ଜାଣୁ
ଛଇଳ ନାଗର ହରି ।
ଇତର ଲୋକଙ୍କ ମହତ ସମ୍ଭାଳୁ
ଆପଣା ମହତ ସାରି ।୧୮ ।
ବଡ଼ ଲୋକ ପୁଅ ବୋଲି ସିନା ତୋତେ
କେହି ନ ବୋଲନ୍ତି କିଛି
ଭଉଣୀକି ଘେନି ଦାଣ୍ଡେ ବୁଲିବାର
କାହା ଘରେ ଦେଖା ଅଛି ।୧୯ ।
ଗଉର ଚରଣ ବୋଲେ ପ୍ରଭୁ ପଣ
ଜଣା ଗଲା, ଏବେ ଆସ
ପତିତପାବନ ପତାକା ଉଡ଼ାଇ
ରତ୍ନ ସିଂହାସନେ ବସ ।୨୦ ।



କବି ଗୌରଚରଣ ଅଧିକାରୀ ଖୋର୍ଦ୍ଧା ଅଞ୍ଚଳର ଲେହଙ୍ଗ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । କବି ଗୌରଚରଣ ଥିଲେ - ଗୌଡ଼ୀୟ ବୈଷ୍ଣବ ମତାବଲମ୍ବୀ । ସେ ଖ୍ରୀ:ଅ: ୧୮୧୪ ରେ ଜନ୍ମ ଗ୍ରହଣ କରି ୧୮୯୦ ପର୍ଯ୍ୟନ୍ତ ଜୀବିତ ଥିଲେ । କବି ଗୌରଚରଣଙ୍କ ରଚିତ ଶ୍ରୀଜଗନ୍ନାଥଙ୍କ ଭଜନ-ଗୁଡ଼ିକ ଅତ୍ୟନ୍ତ ମର୍ମସ୍ପର୍ଶୀ ।

ଭବସିନ୍ଧୁ - ସଂସାର ରୂପକ ସମୁଦ୍ର, ଇତରଲୋକ - ନୀଚ କାର୍ଯ୍ୟ କରୁଥିବା ଲୋକ ।



Digitized by PPRACHIN, SOA

## ୫୭

## ନୀଳଚକ୍ରେ ହୋ

ନୀଳଚକ୍ରେ ହୋ ! ଦେଖ ଉଡୁଛି ବାନା
ପତିତପାବନ ନାମଟି ଯା ନାଁ ।ଘୋଷା ।
ଆସ ଆସ ବୋଲି ପାତକୀମାନଙ୍କୁ
ଡ଼ାକୁଅଛି ପରା ସଙ୍କାତ ଅନା
ନେତ ଧ୍ୱଜାବର ଉଡ଼ି ଫରଫର
ଉଡ଼ାଇ ଦେଉଛି ଭବଯାତନା ।୧ ।
ପଞ୍ଚକୋଶୀ ଯାଏ ଜନେ ଦେଖାଯାଏ
ଦର୍ଶନେ କଲ୍ମଷ ହୁଅଇ ଚୂନା
ଚଉଦ ବ୍ରହ୍ମାଣ୍ଡ କରତାଙ୍କ ଲୀଳା
ଶଙ୍ଖନାଭି କ୍ଷେତ୍ରେ ବିଚିତ୍ର ସିନା ।୨ ।
ସଳଖ ସୁନ୍ଦର ବଡ଼ଦାଣ୍ଡ ଶୋଭା
ମର୍ତ୍ତ୍ୟ ମଣ୍ଡଳରେ କାହିଁ ଅଛିନା
ଶରଧା ବାଲିରୁ ସ୍ୱର୍ଗଦ୍ୱାର ଯାଏଁ
ଗହଳ ଚହଳ ନୁହେ କଳନା ।୩ ।
ପାପଛଡ଼ା ପୁରେ ବାସ କରିବାକୁ
ଯାହାକୁ ତାହାକୁ ନୁହଇ ମନା
ଆଚଣ୍ଡାଳ ବିପ୍ର ପତ୍ରକେ ଭୁଞ୍ଜିବା
ବଡ଼ ଆଚମ୍ବିତ ଲାଗଇ କିନା ।୪ ।
ଗୌର ଦ୍ୱିଜ ଭଣି ଶ୍ରୀକ୍ଷେତ୍ରେ ରହଣି
ପାଇଁ କରୁଥାଇ ସଦା ଭାବନା
ସତେ ହେବେ ସାହା ବଳିଆର ବାହା
ସଂପୂର୍ଣ୍ଣ କରିବି ମନକାମନା ।୫ ।

---

ଭବଯାତନା - ସଂସାରର ଦୁଃଖ କଷ୍ଟ, କଲ୍ମଷ - ପାପ, ଶଙ୍ଖନାଭି କ୍ଷେତ୍ର - ଶଙ୍ଖ ଆକୃତିର ସ୍ଥାନ ଶ୍ରୀକ୍ଷେତ୍ର ପୁରୀ ।



Digitized by PPRACHIN, SOA

## କାଳିଆ କାହ୍ନୁ ଆଉ ବିଳମ୍ବ କର କାହିଁକି



କାଳିଆ କାହ୍ନୁ ! ଆଉ ବିଳମ୍ବ କର କାହିଁକି ?
ବରଷକେ ଥରେ ବିଜୟ ରଥରେ
ପତିତ ତାରିବା ପାଇଁକି । ।ଘୋଷା । ।
ଚଉଦ ବ୍ରହ୍ମାଣ୍ଡ ରୁଣ୍ଡ ହୋଇଛନ୍ତି
ଦର୍ଶନ କରିବା ପାଇଁକି ।
ଅନେକ କାଳର ଦୁଃଖ ଉପେକ୍ଷିବେ
କଳା ଶ୍ରୀମୁଖକୁ ଚାହିଁକି । ।
ଆଗେ ଗଜପତି ଉଭା ହୋଇଛନ୍ତି
ଶିରେ ଯୋଡ଼ି କର ଦୁଇକି ।
ସୁନା ଶୋଧନୀରେ ମାର୍ଜନା କରନ୍ତି
ପହଣ୍ଡି ବିଜୟେ ଭୁଇଁ କି । ।
ଛତିଶାନିଯୋଗ ଉଭା ହୋଇଛନ୍ତି
ଯେ ଭାଜନ ହେବେ ଯହିଁକି ।
ଆକାଶେ ଇନ୍ଦ୍ର ଅମର ବୃନ୍ଦ ପୁଷ୍ପ
ବୃଷ୍ଟି କରୁଛନ୍ତି ତହିଁକି । ।
ତାଳଧ୍ୱଜ ରଥେ ବିଜୟେ କରନ୍ତୁ
କହିଦିଅ ବଡ଼ ଭାଇଙ୍କି ।
ଦେବୀ ରଥ ବଡ଼ ସୁନ୍ଦର ଦିଶିବ
ଭଉଣୀ ହଳଦୀମୁହୀଁଙ୍କି । ।
ତୁମ୍ଭେ ପଛରେ ପଛକେ ଆସୁଥାଅ
କରି ନବରଙ୍ଗ ଛଇକି ।
ମଥା ଦୋହଲାଇ ଟାହିଆ ହଲାଇ
ଠାବେ ଠାବେ ରହି ରହିକି । ।

---

ଉପେକ୍ଷିବା – ଦୂର କରିବା, ଶୋଧନୀ – ପହଁରା, ଝାଡୁ, ଟାହିଆ – ପହଣ୍ଡିବିଜେ ସମୟରେ ତିନି ଠାକୁରଙ୍କ ମୁଣ୍ଡ ବନ୍ଧା ଯାଇଥିବା ସୋଲର ମୟୂରପୁଚ୍ଛ ଆକୃତିର ମୁକୁଟ ।



Digitized by PPRACHIN, SOA

## ୫୯

## ନୀଳାଦ୍ରି ସିଂହ କି ଲୀଳା ଲଗାଇଛ



ନୀଳାଦ୍ରି ସିଂହ ! କି ଲୀଳା ଲଗାଇଛ ଆଣିକି ?
ନିସ୍ତାରିବା ପାଇଁ ପତିତମାନଙ୍କୁ
ବିସ୍ତାରିଛ ବେନି ପାଣିକି । ।ଘୋଷା । ।
ଏକା କରି ଯାହା ଛାଡ଼ି ଆସିଅଛ
ମହାଲକ୍ଷ୍ମୀ ଠାକୁରାଣୀଙ୍କି ।
ସେ ଏବେ କି ଦୁଃଖେ ବସି ମ୍ଲାନମୁଖେ
ନଖେ ଚିରନ୍ତି ଧରଣୀ କି । ।
ତୁମ୍ଭେ ନନ୍ଦିଘୋଷ ପୃଷ୍ଠେ ବସି ହୃଷ୍ଟେ
କରି କଟାକ୍ଷ ଚାହାଣି କି ।
ଦର୍ଶନ ମାତ୍ରକେ ଅଶେଷ କଳୁଷ –
ମାନଙ୍କୁ ପକାଅ ହାଣି କି । ।
ଆଗେ ବଳଭଦ୍ର ମଧ୍ୟରେ ସୁଭଦ୍ରା
ପଛରେ ଛଇଳା ମଣିକି ।
ତିନିଗୁଣେ ସ୍ଥିତି ତ୍ରିଗୁଣ ମୂରତି
କେ ପାରେ ସେ ତତ୍ତ୍ୱ ଜାଣି କି । ।
ଉକ ଜକ କଳା ଶ୍ରୀମୁଖ ଝଟକ
ନିନ୍ଦେ ଇନ୍ଦ୍ରନୀଳମଣି କି ।
କେମନ୍ତ ସୁନ୍ଦର ରଙ୍ଗିମା ଅଧର
ବନ୍ଧୁଲୀ କୁସୁମ ଜିଣି କି । ।
ଦ୍ୱିସପ୍ତ ବ୍ରହ୍ମାଣ୍ଡ ଯାକ ଶୋଭା ରୁଣ୍ଡି
ସାର ସାର ଛାଣି ଛାଣି କି ।
ବିଚାରି ବିଚାରି ଚାରି ବଦନ ଏ
ରୂପ ଅଛି ନିରିମାଣି କି । ।
ରଥର ଦଉଡ଼ି ଲମ୍ବେ ଧାଡ଼ି ଧାଡ଼ି
କିବା ସେ ବାସୁକି ଫଣୀକି ।
ନର ସ୍ୱରୂପେ ଅମରଗଣ ମିଶି
ସଧୀରେ ଧରନ୍ତି ଟାଣି କି । ।



Digitized by PPRACHIN, SOA

ଚକ୍ର କଟ କଟ ନୀଳାଦ୍ରି ପ୍ରକଟ
ଘଣ୍ଟି ନାଦ ଟିଣି ଟିଣି କି ।
ବାଜେ ଦୁମୁ ଦୁମୁ ଦୁନ୍ଦୁଭି ମର୍ଦ୍ଦଳ
ବେଣୁ ବୀଣା ଅଁଳାବେଣି କି ।।
ଛତ୍ର ଚାମର କଳସ ମନୋହର
ବିଚିତ୍ର ରଥ ସାଜେଣୀ କି ।
କରି ଘୁଂ ଘୁଂ ଘୋଷ ଚଳେ ନନ୍ଦିଘୋଷ
କମ୍ପାଇ ଦିଏ ଧରଣୀ କି ।।
ଗର୍ଜୁନାହିଁ ତର୍ଜୁ ଅଛି ସେ ପ୍ରକୋପେ
ବର୍ଜୁଛି ପାତକ ଶ୍ରେଣୀକି ।
ପଳା ତୁ ଅଠର ନଳା ଠାରୁ ବଳି
ନ ଆସିବୁ ଆଉ ଏଣିକି ।।
ଜଗତ କରତା ଚଉବର୍ଗ ଦାତା
ଫିଟାଇ ଐଶ୍ୱର୍ଯ୍ୟ ଖଣିକି ।
ପ୍ରେମ ଚିନ୍ତାମଣି ସମ୍ପତ୍ତି କି ଆଣି
ଦାଣ୍ଡରେ ଦେଇଛି କୁଣି କି ।।
ଦରଶନେ ଆଜି ଆନନ୍ଦ ଉଚ୍ଛୁଳେ
କେହୁ ଭାଷେ ଜୟ ବାଣୀ କି ।
ଯାହା ମନେ ଯାହା ଅଛଇ ସେ ତାହା
ଜଣାଏଟି ଚିନ୍ତାମଣିକି ।।
ଗଉର ଚରଣ ବୋଲେ ବାପରାଣ
ପକାଉଛି ଥାଅ ଜାଣି କି ।
ମୋ ମରଣ ବେଳା ଜାଣି ଚକାଡୋଳା ।
ଦେଖାଇବ ଏହି ଠାଣିକି ।।



ନୀଳାଦ୍ରି ସିଂହ - ନୀଳଗିରିର ସିଂହ ସଦୃଶ ଶ୍ରୀଜଗନ୍ନାଥ, ମ୍ଳାନମୁଖ - ବିରସବଦନ, କଳୁଷ - ପାପ, ଛଇଳାମଣି - ସୁଭଦ୍ରା, ତ୍ରିଗୁଣ ମୂର୍ତ୍ତି - ସତ୍ତ୍ୱ, ରଜ, ତମୋଗୁଣ ସମ୍ପନ୍ନ ତ୍ରିମୂର୍ତ୍ତି ଅର୍ଥାତ୍ ସତ୍ତ୍ୱଗୁଣଯୁକ୍ତ ଜଗନ୍ନାଥ, ରଜୋଗୁଣ ଯୁକ୍ତ ସୁଭଦ୍ରା ଓ ତମୋଗୁଣ ସମ୍ପନ୍ନ ବଳଭଦ୍ର । ଦ୍ୱିସପ୍ତବ୍ରହ୍ମାଣ୍ଡ- ଚଉଦ ବ୍ରହ୍ମାଣ୍ଡ ଯଥା ଭୂ, ଭୁବ, ସ୍ୱ, ମହ, ଜନ, ତପ, ସତ୍ୟ ଓ ଅତଳ, ବିତଳ, ସୁତଳ, ତଳାତଳ, ରସାତଳ, ମହାତଳ, ପାତାଳ ଆଦି ଚତୁର୍ଦ୍ଦଶ ଲୋକ ।



Digitized by PPRACHIN, SOA



# ୬୦

## ଚକାନୟନକୁ ପତିତ କେହି

ଚକାନୟନକୁ ପତିତ କେହି
ତକାଇ ଖର ନିଃଶ୍ୱାସ ପକାଇ
ଡ଼କା ପକାଇ ଗରୁଡ଼ ପଛରେ
ବକାରି ! ମୋ ଆର୍ତ୍ତ ଶୁଣ ସତ୍ୱରେ ହେ
ଢ଼କ୍‌କା ବାଜୁଛି ମହିମା ହେ
ଠକାର କରି କର୍ଣ୍ଣେ ଗିର ନଶୁଣ
ଚାହିଁକି ବିଚିତ୍ର କର୍ମା ହେ ।୧।

କରୀ-କରିଣୀ ଦ୍ରୌପଦୀ-ବିପତ୍ତି
ହରି ! ହଟେ ପରା ଡ଼େରି ଶ୍ରୁତି
ଦରିଦ୍ର ସୁଦାମାଙ୍କୁ କୋଟିନିଧି
ପରିପୂର୍ଣ୍ଣେ ଦେଲେ କୃପାବାରିଧି ହେ
ଧରିଯା ମହିମା ଚିତ୍ତେ ହେ
ସରି ତ ଯାଉଛି ହରି ! ଆଉ ଥରେ
ନ ଚାହିଁଲ କୃପା' ନେତ୍ରେ ହେ ।୨।

ଅଜାନୁବାହୁ ! ମୁଁ ପତିତ ଜଣେ
ଅଜାମିଳୁଁ ବଳି ସହସ୍ର ଗୁଣେ
ଲଜ୍ଜା ହରି ନ ତାରିଲେ ନିକର
ଧ୍ୱଜା ଚକ୍ରରୁ ବହନ ଉତ୍ତାର ହେ
ମଜ୍ଜାରେ ମୁଁ ଏହା ଭାବେ ହେ
ବଜାଇ ଜୟ ଆର୍ତ୍ତତ୍ରାଣ ଡ଼ିଣ୍ଡିମ
ହଜାଇ ଦେଉଛି ଏବେ ହେ ।୩।





Digitized by PPRACHIN, SOA

ଧଣ୍ଡାମାଳ ବୁହା ! ଦୁର୍ଦ୍ଦଶା ରାହୁ
ଚଣ୍ଡାଳ ଗ୍ରାସୁଅଛି ଚାହୁଁ ଚାହୁଁ
ଭଣ୍ଡାରେ ଖଣ୍ଡା ନାହିଁକି ମଣିମା !
ଗଣ୍ଡାକର ଦିଶୁନାହିଁ ମହିମା ହେ
ହଣ୍ଡା ମୋ ଯାଉଛି ଫାଟି ହେ
ଥଣ୍ଡା କରି କୃପା ଜଳ ବୃଷ୍ଟି କର
ମୋ ଚିତ୍ତ-ଚାତକ ପାଟି ହେ ।୪।

ମନ୍ଦରଧର ନୀଳଗିରିବାସୀ ।
କନ୍ଦରବାସୀ ପ୍ରାୟେ ଅଛ ବସି
ପନ୍ଦର ନେତ୍ର ଧାତା ପୁରନ୍ଦର
ବନ୍ଦନ କରନ୍ତି ଯେଉଁ ପୟର ହେ
ଛନ୍ଦ ଛାଡ଼ ଦେବରାଜେ ହେ !
ନନ୍ଦନନ୍ଦନ ଶ୍ରୀ ଚରଣାର ବିନ୍ଦେ
ଚନ୍ଦନ ହଜୁରୀ ଭଜେ ହେ ।୫।



---

ତାଖି ଖୁଣ୍ଟିଆ ନାମରେ ପରିଚିତ ପ୍ରସିଦ୍ଧ ସ୍ୱାଧୀନତା ସଂଗ୍ରାମୀ ଚନ୍ଦନ ହଜୁରୀ ୧୮୨୭ରେ ପୁରୀ ହରଚଣ୍ଡୀ ସାହିର ଭୀମସେନ ହଜୁରୀଙ୍କ ଘରେ ଜନ୍ମ ଗ୍ରହଣ କରିଥିଲେ । ପ୍ରବାଦ ଅଛି-ଚନ୍ଦନ ହଜୁରୀଙ୍କ ସହିତ ଝାନ୍ସୀ ରାଣୀ ଲକ୍ଷ୍ମୀବାଇଙ୍କର ସମ୍ପର୍କ ଥିଲା । ଚନ୍ଦନ ହଜୁରୀ ପଣ୍ଡା ବେଶ ସାଜି ସମଗ୍ର ଭାରତ ବର୍ଷ ବୁଲି ଝାନ୍ସୀରାଣୀଙ୍କ ବିଦ୍ରୋହ ବାର୍ତ୍ତା ପ୍ରଚାର କରୁଥିଲେ । ସେ ଇଂରେଜମାନଙ୍କ ଦ୍ୱାରା ଧରାଯାଇ ଜେଲ ଭୋଗୁଥିବା ସମୟରେ ଶ୍ରୀଜଗନ୍ନାଥଙ୍କୁ ସ୍ତୁତି କରି ଭଜନ ରଚନା କରିଥିଲେ ।

ଡକାଇ - ଚାହିଁ, ଖରନିଃଶ୍ୱାସ - ଦୀର୍ଘନିଃଶ୍ୱାସ, ବକାରି - ବକାସୁରକୁ ବଧ କରିଥିବା ଶ୍ରୀକୃଷ୍ଣ, ଠକାର- ଠକିଦେବା ମନୋଭାବ, ଗିର - ବାଣୀ, କରୀ - ହାତୀ, ଶୁଣ୍ଠି - କର୍ଣ୍ଣ, ଡ଼ିଣ୍ଡିମ - ବାଜା, ପନ୍ଦରନେତ୍ର - ଶିବ, ଧାତା - ବ୍ରହ୍ମା, ପୁରନ୍ଦର - ଇନ୍ଦ୍ର, ଛନ୍ଦ - କପଟ ।

Digitized by PPRACHIN, SOA

## ୬୧

## ଭଜମନ ଜଗନ୍ନାଥଙ୍କୁ

ଭଜମନ ଜଗନ୍ନାଥଙ୍କୁ
ନୀଳାଚଳବାସୀ ଦାରୁବ୍ରହ୍ମକୁ ।ଘୋଷା ।

ଭଜିଣ ଭୂଷଣ୍ଡ ହୋଇଲା ଅମର
ଧ୍ୟାୟନ୍ତି ବରୁଣ କୁବେର ଯାକୁ
ସ୍ୱର୍ଗେ ଶଚୀପତି ଯା' ପାଦକୁ ଚିନ୍ତି
ବାସୁକି ଧ୍ୟାଉଛି ପଦ୍ମପାଦକୁ ।୧ ।

ବେଦବ୍ୟାସ ଆଦି ଶୁକ ସନକାଦି
ଧ୍ୟାଉଛନ୍ତି ହୃଦେ ଯାହା ନାମକୁ
ବ୍ରହ୍ମା ବେଦବର ଭାବଇ ପୟର
ପଞ୍ଚାନନ ଭାବୁଛନ୍ତି ଯାହାକୁ ।୨ ।

ଚନ୍ଦ୍ର ଦିବାକର ଅଷ୍ଟ ଦିଗପାଳ
ଧ୍ୟାଉଛନ୍ତି ହୃଦେ ଯାହା ପାଦକୁ
ସ୍ୱର୍ଗ ମର୍ତ୍ତ୍ୟ ଆଦି ପାତାଳ ବୈକୁଣ୍ଠ
ରହିଅଛି ଯାହା ଆଜ୍ଞା ପଦକୁ ।୩ ।

ଯେଉଁ ନାମ ସୁଧା ଧ୍ୟାଇଣ ବସୁଧା
ରଖିଅଛି ସେହୁ ସତ୍ୟ ପଦକୁ
ସେ ସତ୍ୟକୁ ଡ଼ର ଚନ୍ଦ୍ର ଦିବାକର
ଚଳାଚଳ ସେହୁ ରାତ୍ର ଦିନକୁ ।୪ ।

ଗଙ୍ଗା ଯା ପୟର ଭାବି ନିରନ୍ତର
ଚଞ୍ଚଳା ଧ୍ୟାଉଛି ଯାର ରୂପକୁ
ସେ ରୂପ ଦର୍ଶନ କରୁଅଛି ଧ୍ୟାନ
ବାକ୍ୟଦେବୀ ଭଣେ ଯାର ନାମକୁ ।୫ ।



Digitized by PPRACHIN, SOA

ଯେଉଁ ପାଦପଦ୍ମ ଭାବୁଛନ୍ତି ସାଧୁ
ଭ୍ରମୁଛନ୍ତି ସେ ସାଧନା ଦ୍ୱାରକୁ
ସେ ଦ୍ୱାରକା ନାଥେ ଭାବେ ଚଣ୍ଡୀ ଦାସ
ନିତ୍ୟେ ପ୍ରଣମଇ ବ୍ରଜପୁରକୁ ।୬।

---

କବି ଚଣ୍ଡୀ ଦାସ ଊନବିଂଶ ଶତାବ୍ଦୀରେ ଅନେକ ଭଜନ, ଜଣାଣ ଓ ଚଉପଦୀ ରଚନା କରି ସୁଖ୍ୟାତ ହୋଇଥିଲେ । ତାଙ୍କ ରଚିତ ଭଜନଗୁଡ଼ିକ ଅତ୍ୟନ୍ତ ହୃଦୟସ୍ପର୍ଶୀ ତଥା ସାବଳୀଳ ଭାଷାରେ ରଚିତ ।

ଭୂଷଣ୍ଡ – ଭୂଷଣ୍ଡକାକ, ଶଚୀପତି – ଇନ୍ଦ୍ର, ପଞ୍ଚାନନ – ଶିବ, ଚଞ୍ଚଳା – ଲକ୍ଷ୍ମୀ, ବାକ୍ୟଦେବୀ – ସରସ୍ୱତୀ, ଦ୍ୱାରକାନାଥ – ଶ୍ରୀକୃଷ୍ଣ ।





Digitized by PPRACHIN, SOA



## ୨୯

### ଜଗବନ୍ଧୁ ନାଥଙ୍କୁ

ଜଗବନ୍ଧୁ ନାଥଙ୍କୁ ଯେ ମୂର୍ଚ୍ଛି ନୁହଇ ।
ଯେଣିକି ଚାହିଁଲେ ତେଣେ ଶ୍ରୀମୁଖ ଦିଶଇ ।।ଘୋଷା।।

ଧନ୍ୟ ତାଙ୍କ ଚକାଆଖି ମନ ରହିଯାଏ ଲାଖି
ବାହୁ ଟେକିଛନ୍ତି ଦୁଃଖୀ ତାରିବା ପାଇଁ ।।୧।।

ମାଳାମାନ ଲମ୍ବିଥାଇ ପାଦତଳ ଯାଏଁ ରହି
ଛାମୁରେ ଗହଳି ଭିଡ଼େ ପଶି ନୁହଇ ।।୨।।

ଯେଣିକି ଦେଲେ ନୟନ ଦିଶଇ କଳା ବଦନ
କଟୀରେ ଯେ ପୀତାମ୍ବର କି ଶୋଭା ପାଇ ।।୩।।

କବି କଳ୍ପଲତା ଜେମା ବୋଲେ ଦୋଷ କର କ୍ଷମା
ପ୍ରଭୁ ତୁମ୍ଭ ପାଦେ ପଡ଼ି ଉଠିବି ନାହିଁ ।।୪।।

---

କବି କଳ୍ପଲତା ଜେମା ଖୁରୁଧା ନିକଟସ୍ଥ ହଳଦିଆ ରାଜ ପରିବାରର କନ୍ୟା ଏବଂ ତାଙ୍କ ସମୟ ଖ୍ରୀଷ୍ଟୀୟ ଉନବିଂଶ ଶତାବ୍ଦୀ ବୋଲି ଅନୁମାନ କରାଯାଏ । ପ୍ରସ୍ତୁତ ଭଜନ ସଂଗ୍ରହରେ ନାରୀକବି ଭାବରେ ତାଙ୍କ ଭଜନଟି ଦ୍ୱିତୀୟ ସ୍ଥାନ ଅଧିକାର କରେ । ପୀତାମ୍ବର -. ହଳଦିଆ ଲୁଗା



Digitized by PPRACHIN, SOA

# ୭୩

## ଭଜ ନୀଳାଚଳ ବିହାରୀ

ଭଜ ନୀଳାଚଳ ବିହାରୀ,
ଭବସିନ୍ଧୁ ଯେବେ ହୋଇବୁ ପାରି ।।ପଦ ।।

ଧବଳ ବରନ ଶ୍ରୀବଳଦେବଙ୍କ ପାଶେଛନ୍ତି ଦେଖ ବିଜୟ କରି
ମଧ୍ୟରେ ସୁଭଦ୍ରା ରୂପ ମନୋହର ଦର୍ଶନେ ଦୁରିତ ପାପ ନିବାରି ।।୧ ।।

କି ସୁନ୍ଦର ଚକାଡ଼ୋଳା ମୁଖପଦ୍ମ ନୟନମନକୁ ଦିଶେ ମାଧୁରୀ
ଭକ୍ତଜନ-ଚିତ୍ତ-ଚାତକ-ଉଲ୍ଲାସ ବରଷି ଆସେ କି କରୁଣା ବାରି ।।୨ ।।

ଜାଇ ଯୂଇ ମଲ୍ଲୀ ମାଳତୀ ସେବତୀ ଧଣ୍ଡାମାଳ ହୃଦେ ଅଛନ୍ତି ଭରି
ଚକା ନୟନକୁ କି ଶୋଭା ପାଉଛି କାଳନ୍ଦୀ ଜଳେ କି ଆସେ ଲହରୀ ।।୩ ।।

ବ୍ରହ୍ମାଦି ନାରଦ ହେଲେ ଅଜ୍ରାମର ଯେଉଁ ପାଦପଦ୍ମ ଆଶ୍ରୟ କରି
ଧ୍ରୁବ ପ୍ରହ୍ଲାଦ ଅକ୍ରୂର ଉଦ୍ଧବ ତରି ଗଲେ ଯେଉଁ ନାମକୁ ଧରି ।।୪ ।।

ବୋଲେ ଜୟସିଂହ ନୃପତି କିଶୋର ଶ୍ରୀମତୀଶ୍ୱରଙ୍କୁ ବିନୟ କରି
ଯେବେ ନ ଭଜିବୁ ତାହାଙ୍କ ନାମକୁ ଅକାରଣେ ଜୀବ ଯିବ ବାହାରି ।।୫ ।।



---

ରାଜକବି ଜୟସିଂହ ଧରାକୋଟ ରାଜବଂଶର ଅନ୍ୟତମ ବ୍ୟକ୍ତି ରୂପେ ପରିଚିତ । ତାଙ୍କ ସମୟ ମଧ୍ୟ ଖ୍ରୀଷ୍ଟୀୟ ଊନବିଂଶ ଶତାବ୍ଦୀ ବୋଲି ଅନୁମିତ ହୁଏ ।

ନୀଳାଚଳ ବିହାରୀ - ନୀଳପର୍ବତରେ ରହୁଥିବା ଶ୍ରୀଜଗନ୍ନାଥ, ଧବଳ - ଧଳା, ଦୁରିତ - ଜନ୍ମଜନ୍ମାନ୍ତର ପାପ, ଭକ୍ତଜନଚିତ୍ତ ଚାତକ ଉଲ୍ଲାସ - ମେଘକୁ ଦେଖି ଚାତକ ପକ୍ଷୀର ମନରେ ଆନନ୍ଦ ଜାତ ହୁଏ । ସେହିପରି ନୀଳ ମେଘ ସଦୃଶ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ଚାତକ ରୂପୀ ଭକ୍ତଗଣ ପ୍ରମୁଦିତ ହୁଅନ୍ତି । ଅଜ୍ରାମର - ଯେଉଁମାନେ ବୃଦ୍ଧାବସ୍ଥା ଭୋଗ କରନ୍ତି ନାହିଁ କିମ୍ବା ମୃତ୍ୟୁ ବରଣ କରନ୍ତି ନାହିଁ ଅର୍ଥାତ୍ ଦେବଗଣ । ଶ୍ରୀମତୀଶ୍ୱର - ଶ୍ରୀମତୀ ରାଧା ଈଶ୍ୱର ଶ୍ରୀକୃଷ୍ଣ ।



Digitized by PPRACHIN, SOA

## ୬୪

## ପ୍ରଭୁ କି ସୁନ୍ଦର ଦିଶ

ପ୍ରଭୁ କି ସୁନ୍ଦର ଦିଶ ବସି ରତ୍ନସିଂହାସନ ।
ପାପୀମାନେ ତରି ଗଲେ କରି ତୁମ୍ଭ ଦରଶନ. ।।

ଶଙ୍ଖ ଚକ୍ର ଗଦା ପଦ୍ମ ଦେଖିଣ ଆନନ୍ଦ ମନ ।
ମସ୍ତକେ ପୂର୍ଣ୍ଣିମା ଚାନ୍ଦ ଦିଶେ କେଡ଼େ ଶୋଭାବନ ।।

ମାଳମାନ ଲମ୍ବିଥାଇ ପାଦତଳ ଯାଏଁ ରହି ।
ବାସନାରେ ଚହଟଇ ପ୍ରଭୁ ତୁମ୍ଭ ଅଙ୍ଗମାନ ।।

କଟୀତଟେ ପୀତାମ୍ବର ଲମ୍ବିଥାଇ ପାଟ ଡ଼ୋର ।
ବାଙ୍କ ଚାହାଣି ତୁମ୍ଭର ଅଙ୍ଗେ କର୍ପୂର ଚନ୍ଦନ ।।

ସୁବର୍ଣ୍ଣରେ ହସ୍ତ ପାଦ ନଶୁଣ ହେ ଭକ୍ତ ଭେଦ ।
ଭାବି କହେ ଆର୍ତ୍ତ ଛାର ଡ଼ାକକୁ ନଶୁଣ ।।
ପ୍ରଭୁ କି ସୁନ୍ଦର - - - - - - - ।।

---

କବି ଆର୍ତ୍ତଦାସ ଖ୍ରୀଷ୍ଟୀୟ ଊନବିଂଶ ଶତାବ୍ଦୀର ଜନୈକ ସିଦ୍ଧ ସାଧକ ଥିଲେ । ତାଙ୍କ ଜନ୍ମ ନୟାଗଡ଼ ନିକଟବର୍ତ୍ତୀ ପଡ଼ାଗୁଆଡିରା ଗ୍ରାମରେ ହୋଇଥିଲା । ପରବର୍ତ୍ତୀ କାଳରେ, ସେ ଜଣେ ତପୋନିଷ୍ଠ ବ୍ୟକ୍ତି ରୂପେ ଖୋର୍ଦ୍ଧା ନିକଟସ୍ଥ ବେଣୁପଡ଼ାଠାରେ ଏକ ମଠ ସ୍ଥାପନ କରି, ଭଜନ, ଜଣାଣ ଆଦି ରଚନାରେ କାଳ ଯାପନ କରିଥିଲେ ।



Digitized by PPRACHIN, SOA

# ୨୪

## ଫେଡ଼ ମୋ' ଆରତ

ଫେଡ଼ ମୋ' ଆରତ,
ହେ ଜଗନ୍ନାଥ ।
ଶ୍ରୀପାଦପଦ୍ମରେ ପ୍ରତି ମୁହୂର୍ତ୍ତରେ ରହିଥାଉ ମୋର ଚିତ୍ତ ।।
ଶ୍ରୀନୀଳାଚଳରେ ଭ୍ରାତାଙ୍କ ସଙ୍ଗରେ
ଭଗ୍ନୀକି ଘେନି ବିଜୟ ସାକ୍ଷାତ ।
ପତିତପାବନ ନାମକୁ ବହିଣ
ଶଙ୍ଖ ଚକ୍ର କରେ ଧରି ଅଛ ତ ।।
ତ୍ରେତୟା ଯୁଗରେ ଅହଲ୍ୟା ସୁନ୍ଦରୀ
ପାଦ ଲାଗି ହୋଇଗଲା ମୁକତ ।
କିଷ୍କିନ୍ଧା ନଗରେ ବାଳୀକି ମାଇଲ
ସୁଗ୍ରୀ ସଙ୍ଗେ ପ୍ରଭୁ ହେଲ ମଇତ୍ର ।।
ଲଙ୍କା କଟକରେ ରାବଣକୁ ମାରି
ବିଭୀଷଣେ ଗାଡ଼ୀ ଦେଲ ତୁରିତ ।
ଅଯୋଧ୍ୟା ନଗରେ ରାଜପଣ କରି
ଦୟାଳୁ ବୋଲାଅ ଜଗତ ନାଥ ।।
ଲକ୍ଷେ ଯୋଜନରେ ଗଜ ଡ଼ାକ ଦେଲା
ସେ ଡ଼ାକ ଶୁଣିଲ କମଳାକାନ୍ତ
ଚକ୍ରକୁ ପେଷିଲ ନକ୍ର ନାଶ କଲ
ସେଠାରୁ ଗଜତ ହେଲା ମୁକତ ।।
କୁରୁସଭାତଳେ ଉଲଗ୍ନ କାଳରେ
ଦ୍ରୌପଦୀ ଚିନ୍ତିଲା ହୋଇ ଆରତ ।
କୋଟିବସ୍ତ୍ର ଦେଇ ତାକୁ ଉଦ୍ଧାରିଲ
ସେ ଦିନୁଁ ପାଞ୍ଚାଳୀ ଶରଣାଗତ ।।
ବେଳକୁ ବେଳକୁ ଘୋଟିଲାଣି କାଳ
ଆଶ୍ରା କରିଛି ଶଙ୍ଖଚକ୍ର-ହସ୍ତ ।
ଭଣଇ ଆରତ ଗୁଡ଼ିଆର ସୁତ
ସପତବ୍ରହ୍ମାଣ୍ଡେ ନାମ ବିଖ୍ୟାତ ।।





Digitized by PPRACHIN, SOA

୨୨

## କାହିଁ ପାଇଁ ହେଲୁ ବାଉଳା

କାହିଁ ପାଇଁ ହେଲୁ ବାଉଳା,
ଚିହ୍ନି ନ ପାରିଲୁ ପଙ୍କଜ ଡ଼ୋଳା ।ଘୋଷା ।

ଚ଼ତୁର୍ଦ୍ଧା ମୂରତି ଶ୍ରୀନୀଳକନ୍ଦରେ ନୀଳ ଶ୍ୱେତ ପୀତ କୁଙ୍କୁମ କଳା
ଶଙ୍ଖ ଚକ୍ର ଗଦା ପଦ୍ମ ତୋଳିଛନ୍ତି ଥୟେ କରି ତୋର ମନକୁ ବଳା ।୧ ।

ଜ଼ଗନ୍ନାଥ ବଳଭଦ୍ର ସୁଭଦ୍ରା
ସୁଦର୍ଶନ ଏକ ଅଙ୍ଗ ପରା
ଏକରୁ ଅନେକ ବିଜାତ ହୋଇଛି
ଚିହ୍ନି ନ ପାରିଲୁ ମନ ଭେବଳା ।୨ ।

ମହୋଦଧି ତଟେ ସର୍ବଦେବ ଭେଟ
ତହିଁ ଦିଶୁଛି କୈବଲ୍ୟ ପସରା
ରତ୍ନ ସିଂହାସନେ ବିହାର ଲାଗିଛି
କିଶୋରୀ ଅଙ୍ଗରେ ଜଡ଼ି କିଶୋରା ।୩ ।

ଯୋଗୀଜନମାନେ ଯେ ନାମ ଧରିଣ
ମନକୁ ସାଧନ୍ତି ପବନ ଧୀରା
ଭଣିଲେ ମାଧବ କେ ଅବା କହିବ
ଭରସା କରିଛି ଦେବକୀ-ବଳା ।୪ ।

---

କବି ମାଧବଦାସ ଉନବିଂଶ ଶତାବ୍ଦୀର କବି ରୂପେ ପରିଚିତ । ତାଙ୍କ ନାମ ଭଣିତାରେ କେତୋଟି ଭଜନ ଓ ଚଉପଦୀ ମିଳେ ।

ବାଉଳା - ଭ୍ରମରେ ପଡ଼ିବା, ପଙ୍କଜ ଡ଼ୋଳା - ପଦ୍ମନେତ୍ର ଶ୍ରୀଜଗନ୍ନାଥ, ଶ୍ୱେତ - ଧଳା, ପୀତ- ହଳଦିଆ, ମହୋଦଧି - ସମୁଦ୍ର, ଦେବକୀବଳା - ଦେବକୀ ପୁତ୍ର ଶ୍ରୀକୃଷ୍ଣ, ଓଡ଼ିଆଭକ୍ତମାନେ ଶ୍ରୀଜଗନ୍ନାଥ ଓ ଶ୍ରୀକୃଷ୍ଣଙ୍କୁ ଅଭେଦ ଭାବରେ କଳ୍ପନା କରନ୍ତି ।



Digitized by PPRACHIN, SOA

## ୬୭

### ଚାଲ ଦେଖି ଯିବା ହେ ବନ୍ଧୁ



ଚାଲ ଦେଖି ଯିବା ହେ ବନ୍ଧୁ, ଚକାଡ଼ୋଳା କଳା ମୁହଁକୁ ।
ଯେଉଁ କଳା ମୁହଁ ଦରଶନ କଲେ ନ ସହିବ ଯମ ଡ଼ାହାକୁ ।।

ଗ୍ରାମମଙ୍ଗଳାଙ୍କୁ ପୂଜିଣ ପୂଜିବା ପଥରେ ବାଟ ମଙ୍ଗଳା ।
ଖଣ୍ଡେ ଦୂରେ ଯାଇଁ ଦାଣ୍ଡେ ରହି ରହି ଭେଟିବା ଅଠରନଳା ।।

ହୋଇ ଏକ ସଙ୍ଗେ କରି ନାନା ରଙ୍ଗେ ଗାଧୋଇ ନରେନ୍ଦ୍ର କୁଣ୍ଡେ ।
ଲଣ୍ଡ ଭଣ୍ଡେ ଯାଇ ବଡ଼ ଦାଣ୍ଡେ ଚାଣ୍ଡେ ତା ଧୂଳି ଘେନିବା ମୁଣ୍ଡେ ।।

ଗରୁଡ଼ଙ୍କ ପାଶେ ଯାଇଣ ହରଷେ ସମସ୍ତ ଦୁଃଖ ଜଣାଇ ।
କହିବା ବିନୋଇ ଶବଦ ତାହାଙ୍କୁ ପ୍ରଭୁଙ୍କୁ ଦେବେ ବୁଝାଇ ।।

ସିଂହ ଦୁଆରରେ ଦରଶନ ଭିଡ଼ ବରଷଇ ବେତ ମାଡ଼ ।
ଛାତି ଦମ୍ଭ କରି ପେଲି ଠେଲି ଯିବା ଖାଇଲେ ଖାଇବା ମାଡ଼ ।।

ବ୍ରାହ୍ମଣେ ବସିଣ ବାଇଶି ପାବଚ୍ଛେ କଇବଲ୍ୟ ବିକୁଥିବେ ।
ଚଖାଇ ରସାଇ ଛଡ଼ାଇ ତ଼ରସା ପଇସା ଅଣ୍ଟାରୁ ନେବେ ।।

କୃଷ୍ଣ ବଳରାମ ସୁଭଦ୍ରା ସେବିଣ ମୁକତ ଲଭିଣ ଧାମେ ।
ପ୍ରବେଶିଣ ଦୀନ ମଧୁ ସ୍ୱାଇଁ ଭାଷେ ମହିମା କହିବା ଗ୍ରାମେ ।।

---

ଯମଡ଼ାହା – ଯମ ଯନ୍ତ୍ରଣା, ଲଣ୍ଡଭଣ୍ଡ – ତରତର, ତରସା – ଶୀଘ୍ର, ବାଇଶିପାବଛରେ ପୂର୍ବରୁ ମହାପ୍ରସାଦ ବିକ୍ରୟ ହେଉଥିବା ବିଷୟରେ ବହୁ କବି ଉଲ୍ଲେଖ କରିଛନ୍ତି । ଦୀନ ମଧୁ ସ୍ୱାଇଁ ଖୁବ୍ ସମ୍ଭବତଃ ଉନବିଂଶ ଶତାବ୍ଦୀ କବି ହୋଇପାରନ୍ତି । ତାଙ୍କ ରଚିତ ଅନ୍ୟାନ୍ୟ ରଚନା ଥିବାର ଦେଖାଯାଏ ନାହିଁ ।



Digitized by PPRACHIN, SOA

୨୮

## ଆହେ ନୀଳାଦ୍ରିବିହାରୀ

ଆହେ ନୀଳାଦ୍ରିବିହାରି !
କଟକେ ଅଟକ ହେବାରୁ ମୋ ଦିନ
ସରୁନାହିଁ ଝୁରିଝୁରି ।।
ବାବୁ ଚିନ୍ତାମଣି ତରକ ନ ଜାଣି
ରାମଚନ୍ଦ୍ରଙ୍କୁ ଆଣିଲେ ।
ରାଜାଧିପଣ୍ଡିତ କୈବଲ୍ୟ ଲଂଘିଣ
ବାରବାଟୀ ଧରାଇଲେ ।।
ଚକାଆମ୍ବଠାରୁ ବିକାସାଇ ଯାଏ
ଝାଡ଼ ଜଙ୍ଗମ ବୁଲିଲି ।
ତୁମ୍ଭରି ଶ୍ରୀମୁଖ ଦର୍ଶନ ନ ପାଇ
କଟକେ ଅଟକ ହେଲି ।।
ବାବୁ ହରିହର ସୁପାତ୍ର ମୋହର
ବାରେ ମୋତେ ଦୟା କର ।
ଭଣ୍ଡାରରୁ ଖଣ୍ଡା ବାହାର କରିଣ
ପ୍ରଭୁ ! ଓଡ଼ିଶା ଶତ୍ରୁ ନିବାର ।।
ମୁହିଁ କର୍ମହୀନ କରୁଛି ଜଣାଣ
କିମ୍ପା ନ ଶୁଣ ଗୁହାରି ।
ଶ୍ରୀଚରଣ ତଳେ ଶରଣ ପଶୁଛି
ଓଡିଶା ନବକେଶରୀ ।।

---

ପ୍ରସ୍ତୁତ ଭଜନଟି ମୁକୁନ୍ଦଦେବ ରଚନା କରିଥିଲେ ବୋଲି ଐତିହାସିକମାନଙ୍କ ମତ । ଇଂରେଜମାନଙ୍କ ଓଡ଼ିଶା ଅଧିକାରକୁ ବିରୋଧ କରି, ମୁକୁନ୍ଦଦେବ ପୁରୀରେ ବିଦ୍ରୋହ କରି, ଇଂରେଜ ଶାସକମାନଙ୍କୁ ଅସ୍ତବ୍ୟସ୍ତ କରିଦେଇଥିଲେ । ପରେ ମରହଟ୍ଟା ଶାସକଙ୍କ ପ୍ରତିନିଧି ରାଜାଧି ପଣ୍ଡିତଙ୍କ ବିଶ୍ୱାସଘାତକତାରୁ ତାଙ୍କୁ ଇଂରେଜମାନେ କଟକର ବାରବାଟୀ ଦୁର୍ଗରେ ଅଟକ ରଖିଥିଲେ । ସେ ନିଜକୁ ଓଡ଼ିଶାର ନବକେଶରୀ ଅର୍ଥାତ୍ ନୂତନ ସିଂହ ବୋଲି ବର୍ଣ୍ଣନା କରିଛନ୍ତି । ରାଜା ମୁକୁନ୍ଦଦେବଙ୍କ ସମୟ ଖ୍ରୀ:ଅ: ୧୭୯୩-୧୮୧୭ ବୋଲି ଜଣାଯାଏ । ଇଂରେଜମାନେ ତାଙ୍କୁ କିଛିଦିନ ମେଦିନୀପୁରଠାରେ ବନ୍ଦୀ କରିବା ପରେ ପୁଣି କଟକର ବାରବାଟୀ ଦୁର୍ଗକୁ ଫେରାଇ ଆଣିଥିଲେ । ସେହି ବନ୍ଦୀଶାଳାରେ ତାଙ୍କର ମୃତ୍ୟୁ ହୋଇଥିଲା ।



Digitized by PPRACHIN, SOA

# ୬୯

## ପ୍ରଭୁ ନୀଳାଦ୍ରି ବିହାରୀ



ପ୍ରଭୁ ନୀଳାଦ୍ରି ବିହାରୀ
କଟକେ ଅଟକ ହେବାରୁ ମୋ ଦିନ
ସରୁ ନାହିଁ ଝୁରି ଝୁରି ।।ଘୋଷା।।
ମହା ବଳିଆର ଭୁଜ ଦେବରାଜ
ସୁଦର୍ଶନ ଚକ୍ର ଧାରି !
ଏ ମହା ବିପଦୁ ଉଦ୍ଧରିଲ ନାହିଁ
ନ ଶୁଣିଲ ମୋ ଗୁହାରି ।।୧।।
କନ୍ଦିରୁ ଅଣାଇ ବନ୍ଦୀ କରାଇଲ
ଶ୍ରୀ ନନ୍ଦିଘୋଷ ବିହାରି ।
ଛନ୍ଦି କରଦ୍ୱୟ ଦେଖାଉଛି ଭୟ
ଦ୍ୱନ୍ଦୀ ବିଜାତି ପାହାରୀ ।।୨।।
କଳା ଶ୍ରୀବଦନ ଏ ଘୋର କଦନ
ବେଳକୁ ବେଳ ତ ଭାରୀ
ଧଳା ଅଶ୍ୱବାଗ ପାଉ ନାହିଁ କିବା
ଲୋଡ଼ି ଲୋଡ଼ି ଦଇତାରି ।।୩।।
କେତେ କାହାକୁ ସଙ୍କଟୁ ରଖି ନାହଁ
କୃପାନିଧି ଦୁଃଖହାରି ।
ମୋହର ବେଳକୁ ନିର୍ଦ୍ଦୟ-ହୃଦୟ
ହେଉଛ କିସ ବିଚାରି ? ।।୪।।
ସିନ୍ଧୁ ସୁତାପତି ! ଅବା ମୋ ବିପତ୍ତି
ପ୍ରତାପେ ହେଉଛ ଘାରି
ଦିବ୍ୟସିଂହ ଦେବ କାହାକୁ କହିବ
ଆପଣ ନ କଲେ ପାରି ।।୫।।

---

ରାଜକବି ଦିବ୍ୟସିଂହ ଦେବ ଖୋର୍ଦ୍ଧା ଭୋଇବଂଶର ଗଜପତି ରାଜା ରୂପେ ରାଜତ୍ୱ କରୁଥିଲେ । ଇଂରେଜମାନଙ୍କ ଚକ୍ରାନ୍ତରେ ତାଙ୍କୁ ନିର୍ବାସନ ଦଣ୍ଡରେ ଦଣ୍ଡିତ କରିଥିଲେ । ସେ ଦିବ୍ୟସିଂହ ଦେବ ତୃତୀୟ ନାମରେ ପରିଚିତ ଥିଲେ । ପ୍ରଥମେ ତାଙ୍କୁ କଟକରେ ଓ ପରେ ମେଦିନୀପୁରଠାରେ ବନ୍ଦୀକରି ରଖାଯାଇଥିଲା । ପରେ ତାଙ୍କୁ କଳାପାଣି ଦଣ୍ଡରେ ଦଣ୍ଡିତ କରାଯାଇଥିଲା । ଏହାଙ୍କ ସମୟ ୧୮୬୦-୬୭ ବୋଲି ଜଣାଯାଏ ।



Digitized by PPRACHIN, SOA

# ୨୦

## ହେଳା କରନା ହେ



ହେଳା କରନା ହେ ନୀଳାଚଳ ନାଥ ଆଉ ।
ବଳାଇଲା ଦୁଃଖ କଳାକର ମୁଖ,
ତୋ' ପରା ଚାଳକ ଥାଉଁ ।।

ମିଳାଇଲା ଦେହ ଜଳେ ଲୁଣ ପରି,
ପଳାଇ ଯିବ ଏ ଜୀବ ।
ଟଳାଟଳି କଲେ ଲୀଳା ବିନୋଦିଆ,
କେ କିମ୍ପା ତୋତେ ଭଜିବ ।।

ଗଳାକଟା ଛଟା କା'ଠାରୁ ଶିଖିଲୁ,
କୁଳବୁଡ଼ା ନନ୍ଦବଳା ।
ଦୁରୁବଳେ ବଧି କି ଫଳ ପାଇବୁ,
କୁରୁବଳ ଦମ୍ଭ ଟଳା ।।

ତୁଳାପଟ ପରି ଶଇଳ ଟେକିଲୁ,
ଗୋକୁଳ ଆକୁଳ ଦେଖି ।
ମୋ' ବେଳକୁ ଏବେ ପଛକୁ ଘୁଞ୍ଚୁଛୁ,
ଲାଞ୍ଛ ଦେଇଥିଲେ ସେ କି ।।

ଅରଜୁନେ ଶଳା ହୋଇ ନନ୍ଦିଘୋଷ
ଚଳାଇଲୁ ଭାରତରେ ।
ଦେଲେ କି ପୁଜାଏ କୁନ୍ତୀ ପାଞ୍ଚ ପୁଏ
ହୀରା ନୀଳା ତୋ ହାତରେ ।।



Digitized by PPRACHIN, SOA

ନିଜ ଗୋହି ନିଜେ ଖୋଳନା ସହଳେ
ଜଳଧିଜେମା ବଲ୍ଲଭ
ବଇଷ୍ଣବ ଭାଳେ ଭାସେ ଶୋକଜଳେ
ବଢ଼ା ତୋ କରପଲ୍ଲବ ।।

---

କବି ବୈଷ୍ଣବ ପାଣି ୧୯ଇ ଶତାବ୍ଦୀର ଜଣେ ଶ୍ରେଷ୍ଠ ଯାତ୍ରାକାର ରୂପେ ପରିଚିତ । ତାଙ୍କ ରଚିତ ବହୁ ଯାତ୍ରା, ସୁଆଙ୍ଗ ଓଡ଼ିଆ ନାଟ୍ୟ ସାହିତ୍ୟକୁ ସମୃଦ୍ଧ କରିଛି । ସେ ପୂର୍ବତନ କଟକ ଜିଲ୍ଲାର ମାହାଙ୍ଗା ଅନ୍ତର୍ଗତ କୋଠପଦା ଗ୍ରାମ ନିବାସୀ ସୁଦର୍ଶନ ପାଣିଙ୍କର ପୁତ୍ର ରୂପେ ଖ୍ରୀ:ଅ: ୧୮୮୨ କୁମାରପୂର୍ଣ୍ଣିମା ଦିନ ଜନ୍ମଗ୍ରହଣ କରିଥିଲେ ।

୧- କୁଳବୁଡ଼ା - ଶ୍ରୀକୃଷ୍ଣ ପ୍ରଭାସ କ୍ଷେତ୍ରରେ ନିଜ ଯଦୁବଂଶକୁ ସଂହାର କରିଥିଲେ ।
୨- ଇନ୍ଦ୍ର ବିବାଦରେ ଶ୍ରୀକୃଷ୍ଣ ଗୋପ, ଗୋପୀ ଓ ଗୋକୁଳ ରକ୍ଷଣ ପାଇଁ ଗୋବର୍ଦ୍ଧନ ପର୍ବତକୁ ଧାରଣ କରିଥିଲେ ।
୩- ସୁଭଦ୍ରାକୁ ବିବାହ କରିଥିବାରୁ, ଶ୍ରୀକୃଷ୍ଣ ଅର୍ଜୁନଙ୍କର ଶଳା ହୋଇଥିଲେ ।
୪- ଜଳଧି - ସମୁଦ୍ର, ଜଳଧି ଜେମା - ଲକ୍ଷ୍ମୀ, ବଲ୍ଲଭ - ସ୍ୱାମୀ ଅର୍ଥାତ୍ ଲକ୍ଷ୍ମୀପତି ଶ୍ରୀଜଗନ୍ନାଥ ।





Digitized by PPRACHIN, SOA

# ୭୧

## ଶରଧା ବାଲି କି ଚାହାଁରେ

ଶରଧା ବାଲି କି ଚାହାଁରେ ସଳଖି,
ଶରଧା ବାଲି କି ଚାହାଁ ।
ତିନିରଥେ ତିନି ଧ୍ୱଜା ଉଡୁଅଛି,
କେମନ୍ତେ ସଧୀରେ ଆହା ।।

ଶରଧା ବଳିଛି ମୋର ଦେଖିବାକୁ,
ଶରଧା ବଳିଛି ମୋର ।
କଳା ଧଳା ହଳଦିଆ ବଦନ ଏ,
ଦୀନଜନଙ୍କ ସୋଦର ।।

ଗୁଣ୍ଡିଚାଯାତକୁ ବିଜେ କରିଛନ୍ତି,
ଗୁଣ୍ଡିଚା ଯାତକୁ ବିଜେ ।
କେବଳ ପତିତେ ତାରିବା ମାନସେ,
ଦରଶନ ଦେଲେ ନିଜେ ।।

ପଡ଼େ ଝିପିଝିପି ପାଣି କି ସୁନ୍ଦର,
ପଡ଼େ ଝିପିଝିପି ପାଣି ।
ପାଣି ନୁହେ ଇନ୍ଦ୍ର ସୁଧା ବରଷଇ,
ବସୁଧାରେ ବେଳ ଜାଣି ।।

ବୟାଳିଶ ଚକ ନାଦ ଏ' ନୁହଇ,
ବୟାଳିଶ ଚକ ନାଦ ।
ଯିବା ଆସିବାରେ ଚୌରାଶୀ ନରକେ,
ନାଶେ ଯେ ଘୁ ଘୁ ଶବଦ ।।



Digitized by PPRACHIN, SOA

ଚୌରାଶୀ ନରକ ପାପୀକି ଡ଼ାକୁଛି,
ଚୌରାଶୀ ନରକ ପାପୀ,
ତରିଯା ତରିଯା କାନେ ଶୁଣି ଘନେ,
ନ ହୁଅ ଆଉ ସନ୍ତାପି ।।

ଧନ୍ୟ ସେ ଗୁଣ୍ଡିଚା ରାଣୀ ଏ' ଜଗତେ,
ଧନ୍ୟ ସେ ଗୁଣ୍ଡିଚା ରାଣୀ ।
ନାମ ଗୁଣେ ଯାତ ଖଞ୍ଜିଗଲେ ସେ ତ,
ପତିତ ତାରିବା ଜାଣି ।।

ସତେ କି ବଇଆ ରଥେ ରହିଥିବ,
ସତେ କି ବଇଆ ରଥେ ।
ଗୀତ ଗାଇ ଦେଲେ ପଥ ବହିଯିବ,
ପଦକେ ହଜାର ହାତେ ।।



---

ଶରଧାବାଲି - ପୁରୀର ଡ଼ାକ୍ତରଖାନା ନିକଟସ୍ଥ ବଳଗଣ୍ଡି ଛକ ଠାରୁ ଗୁଣ୍ଡିଚାମନ୍ଦିର ପର୍ଯ୍ୟନ୍ତ ବାଲିପନ୍ତାକୁ ଶରଧାବାଲି ବୋଲି କୁହାଯାଏ । ସୁଧା - ଅମୃତ, ବୟାଳିଶ ଚକ- ନନ୍ଦିଘୋଷ ଷୋହଳ, ତାଳଧ୍ୱଜ ଚଉଦ ଓ ଦେବଦଳନ ବାର ଚକ ବିଶିଷ୍ଟ । ତେଣୁ ରଥ ତିନୋଟିର ଚକ ସଂଖ୍ୟା ବୟାଳିଶ ।



Digitized by PPRACHIN, SOA



# ୭୨

## ଚାହାଁ ସଖି ଗଜ ଉଦ୍ଧାରଣ ବେଶକୁ

ଚାହାଁ ସଖି ! ଗଜ ଉଦ୍ଧାରଣ ବେଶକୁ ଆଜ ।।

ଆହା ସେ ନବ-ଲାବଣ୍ୟ,
ରୂପ କେଡ଼େ ଶୋଭାବନ ।
ଦରଶନେ ବଶ ନୋହିବ କା ନେତ୍ର ସରୋଜ ।।

ହୋଇଣ ଦିବ୍ୟ ଭୂଷଣ,
ଭ୍ରାତା ଭଗ୍ନୀ ସହିତେଣ ।
ବିଜେ ରତ୍ନସିଂହାସନେ ପ୍ରଭୁ ଶ୍ରୀଦେବରାଜ ।।

ନାନା ପୁଷ୍ପହାରମାନ,
ଗଳାରେ ଦିଶେ ଶୋଭନ ।
ରତନ ମୁକୁଟାଦି ଅଳଙ୍କାରେ ହୋଇ ସଜ ।।

ଆହା ସେ ମୂରତି ଛବି,
ବର୍ଣ୍ଣିବ କି ଛାର କବି ।
ଦୀନ ବେଣୁଧର ଧିଆନେ ସେ ପଦସରୋଜ ।।

---

କବି ବେଣୁଧର ଏଇ ଶତାବ୍ଦୀର ଜଣେ ପ୍ରଖ୍ୟାତ ଭକ୍ତକବି । ଶୁଣାଯାଏ- ତାଙ୍କ ପିତା ତାଙ୍କୁ କ୍ରୋଧବଶତଃ ଘରୁ ତଡ଼ିଦେବାରୁ, ସେ ପୁରୀରେ ରହି, ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଅନେକ ଜଣାଣ ରଚନା କରିଥିଲେ । ତାଙ୍କ ରଚିତ ଗୀତ ଗୁଡ଼ିକ 'ବେଣୁଧର ପଦ୍ୟାବଳୀ'ରେ ସଂଗୃହୀତ ହୋଇଛି । ସରୋଜ - ପଦ୍ମ ।



Digitized by PPRACHIN, SOA

# ୭୩

## ଆହେ ଚକାଆଖି



ଆହେ ଚକାଆଖି !
ଶଙ୍କା କଲ କି ଏ' ମୋ' ବିପତ୍ତି ଦେଖି ।।
ତକାଇ ଛାମୁରେ ନିଶିଦିନ,
ଥକା ହୋଇଲିଣି କରିଧ୍ୟାନ,
ଡ଼କାଇତ ଏଡ଼େ ବୋଲି ଜାଣିଥିଲେ ଆଶ୍ରେ କରିଥାନ୍ତି ମୁଁ କାହିଁକି ।
ଆହେ ——— ।।
ଦକା ମାନସରୁ ନ ହରିଲ,
ପକାଇ ବିପଦେ ସାରିଦେଲ,
ଢକ୍କା ବାଜୁଅଛି ବ୍ରହ୍ମାଣ୍ଡ ଯାକରେ ଏକା ଆରତତ୍ରାଣ ବୋଲି କି ।
ଆହେ ——— ।।
ବକାରି ଟିକିଏ ନ ଶୁଣୁଛ,
ଡକା ପକାଉଛି ହେ ଶ୍ରୀବତ୍ସ,
ବଙ୍କା ହେଲାଣି କି ଚକ୍ରାୟୁଧ ତୀକ୍ଷ୍ଣ ଦାଢ଼ ନ ରଖିଅଛ ସଳଖି ।
ଆହେ ——— ।।
କି କାରଣେ ହରି ନ ଶୁଣିଲ,
ଫିକା ସୁଦୟାକୁ କରିଦେଲ,
ବିକା ହୋଇବାରୁ ଶ୍ରୀଚରଣ ତଳେ ନିକାଶିବା ପାଇଁ ପାଞ୍ଚିଛ କି ।
ଆହେ ——— ।।
ଠକାଠକି ପଣ ଗୋଟି ଛାଡ଼ି,
ଧକ୍କା ଦେଇ ବିପତ୍ତି କି ତଡ଼ି,
ଅକାରଣ ନୋହୁ ଦୀନ ବେଣୁଧର ଜଣାଣ ମାଗୁଛି ମୁଁ ଏତିକି ।
ଆହେ ଚକାଆଖି ।।

---

ଶଙ୍କା - ସନ୍ଦେହ, ତକାଇ - ଚାହିଁ, ଦକା - ଭୟ, ବକାରି - ବକାସୁର ବଧକାରୀ ଶ୍ରୀକୃଷ୍ଣ, ଚକ୍ରାୟୁଧ- ସୁଦର୍ଶନ ଚକ୍ର ନାମକ ଶସ୍ତ୍ର, ଫିକା - ମଳିନ, ନିକାଶିବା - ଶେଷ କରିଦେବା,



Digitized by PPRACHIN, SOA

# ୭୪

## ମେଘମାଳାକୁ ନିନ୍ଦେ କଳାକୁ

ମେଘ-ମାଳାକୁ,
ନିନ୍ଦେ କଳାକୁ,
ଚାହାଁ ବାରେ ମନ ଚକାଡ଼ୋଳାକୁ ।ଘୋଷା ।

ଏ ଭବ-ସରିତେ ତରିଗଲେ ଭକ୍ତେ
ଆଶ୍ରେ କରି ଯାଁର ନାମ-ଭେଳାକୁ
ସଦାଶିବ ହର ହୋଇଲେ ଅମର
କୋଳେ ଧରିଛନ୍ତି ଗିରିବାଳାକୁ
ଗୁନ୍ଥି ମାଳାକୁ, ପିନ୍ଧି ଗଳାକୁ
ନାମ ଜପୁଛନ୍ତି କଳା ଧଳାକୁ ।।୧।।

ସତ୍ୟରେ ଶ୍ରୀପତି ସମୁଦ୍ରକୁ ମନ୍ଥି
ତହିଁରୁ ଜାତ କଲେ କମଳାଙ୍କୁ
ଦେବାସୁର ଯୁଦ୍ଧେ ଅମୃତ ବିବାଦେ
ମୋହିନୀ ହୋଇଲେ ଦେବ ଛଳାକୁ
ରାହୁ ଗଳାକୁ ଛେଦି ହେଳାକୁ
ମୋହ କଲେ ମହାଦେବ ଭୋଳାକୁ ।।୨।।

ତ୍ରେତୟା ଯୁଗରେ ରାମ ଅବତାରେ
ଭଜମନ ବାରେ ରଘୁବଳାକୁ
ପାଇ ସୀତାଛଳ ଘେନି କପିବଳ
ସିନ୍ଧୁରେ ବାନ୍ଧିଲେ ଶିଳା ଭେଳାକୁ
ଜାତ ଖେଳାକୁ, ରଣ ସ୍ଥଳାକୁ
ରଣେ ଛେଦିଲେ ବିଶ୍ରବା ବଳାକୁ ।।୩।।



Digitized by PPRACHIN, SOA

ଦ୍ୱାପର ଯୁଗରେ ଜନ୍ମି ଗୋପପୁରେ
ଓପାଡ଼ି ପକାଇଲେ ଯାମଳାକୁ
କାଳନ୍ଦୀରେ ପଶି କାଳୀଦର୍ପ ଧ୍ୱଂସି
ନିବାରିଲେ ମହା ବିଷଜାଳାକୁ
ଯାଇ ମେଳାକୁ, ରଙ୍ଗ ସ୍ଥଳାକୁ
କପଟେ ମାଇଲେ ସେ ମଉଳାକୁ ।।୪।।

ଏ କଳି ଯୁଗରେ କଳ୍ପବଟ ମୂଳେ
ମାଡ଼ି ବସିଛନ୍ତି ଲକ୍ଷେ ଶିଳାକୁ
ବିକାଇଲେ ଅନ୍ନ ନେଲେ ଜାତି ଧର୍ମ
କେହି ନ ଖୋଜଇ କାହା ଧର୍ମକୁ
କ୍ଷେତ୍ର ସ୍ଥଳାକୁ, ମୁକ୍ତି ଖଳାକୁ
ଭାବେ ହୃଦାନନ୍ଦ ସନ୍ତ ମେଳାକୁ ।।୫।।



କବି ହୃଦାନନ୍ଦ ଦାସ ଊନବିଂଶ ଶତାବ୍ଦୀରେ ଅନେକ ଭଜନ, ଚଉପଦୀ ଆଦି ରଚନା କରି ଓଡ଼ିଆଭଜନ ସାହିତ୍ୟକୁ ସମୃଦ୍ଧ କରିଛନ୍ତି ।

ଭବସରିତ - ସଂସାର ରୂପ ନଦୀ, ଗିରିବାଳା - ପାର୍ବତୀ, ଶ୍ରୀପତି - ବିଷ୍ଣୁ, ଦେବଛଳାକୁ - ଅସୁରମାନଙ୍କୁ, ରାହୁଗଳାକୁ ଛେଦି - ଅମୃତ ପାନ ବେଳେ ଦେବତାମାନଙ୍କ ଧାଡ଼ିରେ ଅମୃତପାନ କଲାରୁ, ଶ୍ରୀବିଷ୍ଣୁ ତା'ର ଶିର ଛେଦନ କରିଥିଲେ । କିନ୍ତୁ ଅମୃତପାନ ହେତୁରୁ ତାର ମୃତ୍ୟୁ ହେଲାନାହିଁ । ତେଣୁ ଶିରଭାଗ ରାହୁ ଓ ଗଣ୍ଡି କେତୁ ନାମରେ ପୂଜିତ ହେଲେ । ବିଶ୍ରବାବଳା - ରାବଣ, ଲକ୍ଷେଶିଳା- ଶ୍ରୀଜଗନ୍ନାଥ ରତ୍ନସିଂହାସନ ଏକ ଲକ୍ଷ ଶାଳଗ୍ରାମ ଶିଳାରେ ନିର୍ମିତ ହୋଇଛି ବୋଲି ଲୋକରେ ବିଶ୍ୱାସ ରହିଛି ।



Digitized by PPRACHIN, SOA

## ୨୪

# ଜଗବନ୍ଧୁ ରଥାଙ୍ଗପାଣି

ଜଗବନ୍ଧୁ ରଥାଙ୍ଗପାଣି
ରତ୍ନସିଂହାସନ ମଉଡ଼ମଣି ।ଘୋଷା ।



ମହୋଦଧି ତୀରେ ଶ୍ରୀନୀଳକନ୍ଦରେ
ସଙ୍ଗେ ଘେନି ରଙ୍ଗେ ଭାଇ ଭଉଣୀ
କରିଛ ବିଜୟ ପ୍ରଭୁ ଦୟାମୟ
କୋଟି-ମତ୍ତସିଂହ-ବିକ୍ରମ ଠାଣି ।।୧।।

ପତିତଙ୍କ ହିତେ ଅନୁରାଗ ଚିତ୍ତେ
ହସି ହସାଉଛ ଜଗତ ପ୍ରାଣୀ
ଅତି ମନୋହର ବେଶ ନଟବର
ଚକାନୟନରେ ମୃଦୁ ଚାହାଣି ।।୨।।

ଅପୂର୍ବ ମୂରତି ପଦ୍ମାଳୟା ପତି
ଅଗତିଙ୍କ ଗତି ବିଶ୍ୱବିନ୍ଧାଣି
ପାତକୀମାନଙ୍କ ଅଶେଷ ପାତକ
ପକାଉଛ ଚକ୍ର ଦାଢ଼ରେ ହାଣି ।।୩।।

ଆହେ ଆର୍ତ୍ତତ୍ରାଣ ! ଗରୁଡ଼ ଆସନ
ମୁଁ କି ଜଣାଇବି ନ ସ୍ଫୁରେ ବାଣୀ
ହରେକୃଷ୍ଣ ସିଂହ ଯୁବରାଜ ଲୋହ-
ହୃଦୟ ଦ୍ରବାଇ ନ କଲ ପାଣି ।।୪।।

---

ହରେକୃଷ୍ଣ ସିଂହ ଉନବିଂଶ ଶତାବ୍ଦୀର ଶେଷଭାଗର କବି ବୋଲି ଅନୁମାନ କରାଯାଏ ।

ରଥାଙ୍ଗପାଣି - ଚକ୍ରଧାରୀ ବିଷ୍ଣୁ, ମହୋଦଧି - ସମୁଦ୍ର, ପଦ୍ମାଳୟା - ଲକ୍ଷ୍ମୀ, ବିଶ୍ୱବିନ୍ଧାଣି- ବିଶ୍ୱକର୍ମା ରୂପେ ବିଷ୍ଣୁ ଜଗତ ନିର୍ମାଣ କରିଛନ୍ତି ।



Digitized by PPRACHIN, SOA

# ୭୬

## ଦେଖ ଲୋ ମିତ

ଦେଖ ଲୋ ମିତ !
କେତେ ଶୋଭା ଏ ଜଗନ୍ନାଥ ।।ଘୋଷା।।
ତିନିରଥ ଉଭାଦାଣ୍ଡେ ଦେଖ ଲୋ ସହି ।
ବଳଭଦ୍ର ଜଗନ୍ନାଥ ହଳଦୀ ମୁହାଁ ।।
ଯିବେ ଯାତରା କରି ଦୁଃଖିଙ୍କ ଦୁଃଖ ହରି
ନବଦିନେ ଫେରିବେ ହୋଇ ଉଷତ ।।
ଦୁଇଭାଇ ଭଉଣୀ କି ସଙ୍ଗତେ ଘେନି
ଯାତରା କଲାରୁ ରୁଷିଛି କମଳିନୀ ।
ହେରା ପଞ୍ଚମୀ ଦିନ ଲକ୍ଷ୍ମୀ କରି ଗମନ
ଭାଙ୍ଗିବେ ରଥକାଠ ହୋଇ କୁପିତ ।।
ଗହଳ ଚହଳେ ନେବେ ସାତଟି ଦିନ
ବଳଭଦ୍ର ଚାନ୍ଦମୁହାଁ କଳାବଦନ ।
ସାରି ଗୁଣ୍ଡିଚାଯାତ ଫେରିବେ ତିନିରଥ
ଶୋଭା ପାଇବେ ଦାଣ୍ଡେ ଜଗତନାଥ ।।
ଅଧରପଣା ପିଇ ବଡଦାଣ୍ଡରେ
ତୋରା ଦିଶିବେ ପ୍ରଭୁ ସୁନାବେଶରେ ।
ମନ୍ଦିରେ ପରବେଶି ପ୍ରଭୁ ଶ୍ରୀବ୍ରହ୍ମରାଶି
ବୋଧିବେ ତୋଷ କରି ଜଗତମାତ ।।
ନବଦିନ ଦର୍ଶନ କରି ଦୀନ ଅଧମ
ପୁରୁଷୋତ୍ତମ ମନ ହେବ ଉଷତ ।।

---

କବି ପୁରୁଷୋତ୍ତମ ମିଶ୍ର ଭଦ୍ରକ ନିକଟସ୍ଥ ଚରମ୍ପା ଗ୍ରାମର ଅଧିବାସୀ ଥିଲେ । ସେ ୧୮୯୦ରେ ଜନ୍ମଗ୍ରହଣ କରି ୧୯୩୬ରେ ଇହଧାମ ତ୍ୟାଗ କରି ଥିଲେ । ସେ ବାଲ୍ମୀକିଙ୍କ ରଚିତ ଆର୍ଷରାମାୟଣର ଅନୁବାଦ କରିବା ସଙ୍ଗେ ସଙ୍ଗେ କେତୋଟି ଭଜନ ଓ ଚଉପଦୀର ରଚୟିତା ଥିଲେ । ସେ ଜଣେ ପାଲା ଗାୟକ ଥିବାରୁ ତାଙ୍କ ରଚନା ଗୁଡିକ ହୃଦୟସ୍ପର୍ଶୀ ହୋଇଛି । ହଳଦୀ ମୁହିଁ - ସୁଭଦ୍ରା, କମଳିନୀ-ଲକ୍ଷ୍ମୀ । ଗୁଣ୍ଡିଚା ଘରୁ ଫେରି ପ୍ରଭୁ ଦ୍ୱାଦଶୀତିଥିରେ ଅଧରପଣା ପାନ କରନ୍ତି ।

Digitized by PPRACHIN, SOA



# ୭୭

## କାଳିଆ ହାତୀ ବୃଷାଳ ହାତୀ

କାଳିଆ ହାତୀ ବୃଷାଳ ହାତୀ
କେଉଁଠାରେ ଥିଲେ ଅଇଲେ ।
କାଦମ୍ବରୀପାନେ ମାତି ମତ୍ତ ହାତୀ
ସବୁକୁ ବାଇ କରାଇଲେ ।୧ ।
ଶ୍ରୀନୀଳକନ୍ଦର ପର୍ବତରୁ ହାତୀ
ନିଶାରେ ବାହାର ହୋଇଲେ ।
ପୂର୍ବ ପୁଣ୍ୟଫଳେ ଦଇତା କନ୍ଧରେ
ହାତୀକୁ ହାତ୍‌ରେ ଧଇଲେ ।୨ ।
ପୂର୍ବ ଦିଗକୁ ମୁଖ କରି ହାତୀ
କଟାକ୍ଷଲୋଚନେ ଚାହିଁଲେ
ତିନିପୁର-ଲୋକ ଏକମେଳ ହୋଇ
ଦରଶନେ ମୁକ୍ତି ପାଇଲେ ।୩ ।
ପଶୁପାଳକ ଫାରେକ ନାୟକ
ପଣ୍ଡା ମୁଦିରଥ ଅଇଲେ
ନାନାଦି ତୀର୍ଥରୁ ତୀର୍ଥଜଳ ଆଣି
ହାତୀକୁ ସ୍ନାନ କରାଇଲେ ।୪ ।
ସ୍ନାହାନ ସାରି ଦେବ ଦେବ ମୁରାରି
ପହଣ୍ଡି ବିଜୟ ହୋଇଲେ
କହେ ପୁରୁଷମ ମୁହିଁ ମୂଢହୀନ
ଅଣସର ଘରେ ରହିଲେ ।୫ ।

---

କବି ପୁରୁଷୋତ୍ତମଙ୍କ ବର୍ଣ୍ଣନାରେ ଶ୍ରୀଜଗନ୍ନାଥଙ୍କ ସ୍ନାନଯାତ୍ରା ଦୃଶ୍ୟ ଅତ୍ୟନ୍ତ ମନୋଜ୍ଞ ହୋଇଛି । ସ୍ନାନଯାତ୍ରା ବେଳେ ପଣ୍ଡାମାନେ ତୀର୍ଥଜଳ ତଥା ଶ୍ରୀମନ୍ଦିର ମଧ୍ୟସ୍ଥ କୂପରୁ ଜଳ ଆଣି ଶ୍ରୀଜଗନ୍ନାଥଙ୍କୁ ସ୍ନାନବେଦୀରେ ସ୍ନାନକରାଇ, ଗଜବେଶରେ ସଜ୍ଜିତ କରନ୍ତି ।

Digitized by PPRACHIN, SOA

## ୨୮

# ରଥେ ବିଜେ କଳା ବଦନ

ରଥେ ବିଜେ କଳା ବଦନ
ଦେଖ ଗୋ ଦେଖ ଗୋ ମିତ ଫେଡ଼ି ନୟନ   ।ଘୋଷା ।

କଳାମାଣିକ ପରା ଦିଶନ୍ତି କେଡ଼େ ତୋରା
ଦେଖି ସେ ରୂପ ମନ ହୁଏ ଉଛନ୍ନ   । ।

ଗଳେ ଦୟଣାମାଳ ଶିରେ ଶ୍ରୀଖଣ୍ଡ ଚୂଳ
ହୃଦପଦ୍ମେ ବିରାଜେ ଶ୍ରୀବତ୍ସଚିହ୍ନ   । ।

ଲଲାଟେ ଠିଆଚିତା ଦିଶେ କେଡେ ଶୋଭିତା
ଶ୍ରୀମୁଖ ଦିଶେ ଯେହ୍ନେ ତାରାରମଣ   । ।

ଘଣ୍ଟୁଆଳେ ଗହଳେ ଘଣ୍ଟପିଟନ୍ତି ହେଳେ
ସେ ମନୋରମ ଶୋଭା ଅତି ଶୋଭନ   । ।

ଶତ ସସ୍ର ଭକତ ତାଳି ମାରି ଉଷତ
ବୋଲନ୍ତି ଉଚ୍ଚେ ଜୟ ଜଗୁଜୀବନ   । ।
ବେଣୁ ଶିଙ୍ଗା ମର୍ଦ୍ଦଳ ନାଦ ଶୁଭେ ଚହଳ
ପୁରୁଷୋତ୍ତମ ରଥେ କରେ ଦର୍ଶନ   । ।



ତୋରା – ସୁନ୍ଦର, ତାରାରମଣ – ଚନ୍ଦ୍ର, ଉଷତ – ଆନନ୍ଦିତ,



Digitized by PPRACHIN, SOA

## ୬୯

## ଜଗବନ୍ଧୁ ତୁମେ ମୋର

ଜଗବନ୍ଧୁ ତୁମେ ମୋର,
ମୋର ଗୁହାରି ଶୁଣ ।।
କାଳ ଜନ୍ତୁରାଣ ଦେଖାଏ ଡରାଣ,
ପରାଣ ନେବାକୁ କରିଅଛି ଟାଣ ।
ବାରଣତାରଣ କରହେ କାରଣ,
ତୁମ୍ଭଙ୍କୁ ମୋ' ରାଣ ହେ ରଘୁରାଣ !
ଦାତା ଆପଣ, ହେଲେ କୃପଣ, ପଣକୁ ପଣ,
ପାପୀଗଣ କା'ରେ ଡାକିବେ ପୁଣ ହେ ।।
ବିରଞ୍ଚି ଇଶାନ କରି ପାରାୟଣ,
ତୁମ୍ଭରି ନାମକୁ ହେ ନାରାୟଣ !
ଲଭିଲେ କାରଣ ଚରଣେ ଶରଣ,
ଗାଏ ମୁହିଁ ଦୀନବନ୍ଧୁ ଜଣାଣ ।।
ଗୁଣନ୍ତି ଗୁଣ, ଚନ୍ଦ୍ରଅରୁଣ, ବାୟୁବରୁଣ,
ଶୁଝି କେ ପାରିବ ତୁମ୍ଭରି ରଣ ।।
ତୁମ୍ଭେ ସର୍ବଜାଣ ମୋ' କଷଣ ଜାଣ,
ଜାଣି ଜାଣି ଯେବେ ହେବ ଦାରୁଣ ।
ଭକତ ଭୂଷଣ ନାମକୁ ଦୂଷଣ,
ନ ହେବକି ବାରେ ମନରେ ଗୁଣ ।
କଲେ କ୍ଷେପଣ, କୃପାଈକ୍ଷଣ, ଦୀନ ରକ୍ଷଣ,
ଦୁଃଖ ଯିବ ଦୂରେ ସହସ୍ର ଜୁଣ ।।

---

କବି ଲୋକନାଥ ପଟ୍ଟନାୟକ ୧୮୯୭ ମସିହାରେ ପୁରୀ ମାର୍କଣ୍ଡେଶ୍ୱର ସାହିରେ ଜନ୍ମଗ୍ରହଣ କରିଥିଲେ । ସେ ଜଣେ ଉଚ୍ଚ ଶିକ୍ଷିତ, ଖ୍ୟାତନାମା ଆଇନଜୀବୀ ତଥା ସଙ୍ଗୀତଜ୍ଞ ଥିଲେ । ତାଙ୍କ ରଚିତ ଚମ୍ପୂ, ଭଜନ, ଚଉପଦୀ, କୀର୍ତ୍ତନ, ଛାନ୍ଦ, ପଲ୍ଲୀଗୀତ' ପ୍ରଭୃତି ଶହ ଶହ ସଂଖ୍ୟାରେ ରହିଛି । କବି ୧୯୬୫ରେ ଇହଲୀଳା ସମ୍ବରଣ କରିଥିଲେ ।

ଜନ୍ତୁରାଣ - ଯମ, ବାରଣତାରକ - କୁମ୍ଭୀର କବଳରୁ ହସ୍ତୀର ଉଦ୍ଧାରକାରୀ, ବିରଞ୍ଚି - ବ୍ରହ୍ମା, ଈଶାନ - ଶିବ, ଅରୁଣ - ସୂର୍ଯ୍ୟ, ଦୂଷଣ - ଦୋଷ, ଈକ୍ଷଣ - ଦୃଷ୍ଟି ।



Digitized by PPRACHIN, SOA

## ୮୦

### ବଡ଼ ଦେଉଳେ ବଡ ଦିଅଁ

ବଡ଼ ଦେଉଳେ ବଡ ଦିଅଁ କାହିଁକି ?
ବଡ଼ ବୋଲାଇ ଲାଜ ନାହିଁକି ? ।୦।

ବଡ଼ ଦିଅଁ ବଡ଼ ଦିଅଁ ପଡୁଛି ହୁରି (ହରିହେ)
ବଡ଼ତି କରିଛ କହ କାହିଁ କାହାରି ?
ଧରମ ପାପ ଯାହା-କଲି ଭୋଗିଲି ତାହା ।
ମୋ କରମ ବଦଳ ନାହିଁତ ତୁମ ବଳ
କି ହେବ ହେ ପ୍ରଭୁ ପଣ ଥାଇକି ? ।୧।

ଆପଣା କରମ ଯେବେ ଭୁଞ୍ଜିବା ଲେଖା
କାହିଁକି ବୋଲାଅ ଦୀନଜନର ସଖା ?
କରମ ବଳ ଥିଲେ, ସୁଫଳ ଫଳେ ବଳେ
ଅଦଳ ବଦଳକୁ ନାହିଁକେ ଶୁଣିବାକୁ
ସୁଖର ସାଥୀ ପରା ତମେ ମୁରଲୀ ଧରା
ରାଧା ମରିଛି ଗୁଣ ଗାଇକି ।୨।

---

କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ୧୮୯୭ ମସିହା ଡିସେମ୍ବର ମାସର ୨୩ ତାରିଖରେ ବଡମ୍ବାଠାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଦୁର୍ଗାଚରଣ ପଟ୍ଟନାୟକ ଓ ମାତାଙ୍କ ନାମ ରାଧାମାଳୀ ଦେବୀ । ସେ ଓଡିଶାରେ ବିଭିନ୍ନ ଅନୁଷ୍ଠାନ ସହିତ ଜଡିତ ଥିଲେ ଏବଂ କେନ୍ଦ୍ର ସଙ୍ଗୀତ ନାଟକ ଏକାଡେମୀର ଆଜୀବନ 'ଫେଲୋ' ଥିଲେ । ସେ ବହୁପୁସ୍ତକର ପ୍ରଣେତା ଓ ଭଜନ, ଚଉପଦୀ ଓ କବିତା ରଚନା କରି, ଓଡିଆ ସାହିତ୍ୟର ସଙ୍ଗୀତ ବିଭାବଟିକୁ ସମୃଦ୍ଧ କରିଛନ୍ତି । କବିଚନ୍ଦ୍ର କାଳୀଚରଣ ୧୯୭୮ ଜୁଲାଇ ୧୪ ତାରିଖ ଦିନ ଇହଧାମ ତ୍ୟାଗକରିଛନ୍ତି ।



Digitized by PPRACHIN, SOA

# ୮୧

## ବଡ଼ଦିଅଁ ହେ

ବଡ଼ଦିଅଁ ହେ, ତୁମେ ବଡ଼ କପଟୀ !
ବଡ଼ ଦିଅଁ ହେ !
କାହାକୁ ହସାଅ କାହାକୁ କନ୍ଦାଅ,
କିଏ ଦେଲା ଦୟାନିଧି ନାମଟି ।।

କେ ହୁଏ ଭୂପତି କିଏ ଚକ୍ରବର୍ତ୍ତୀ
ଦାସ ଦାସୀ ପୋଇଲୀ ଥା'ନ୍ତି ଖଟି,
କେ ହୋଇ ଫକୀର ବୁଲେ ଦ୍ୱାର ଦ୍ୱାର
ଯୋଗୀ ହୋଇ କିଏ ମାଗୁଛି ମୁଠି ।।

କେ ଖିରୀ ଖେଚଡ଼ି ଖାଉଛି ହାପୁଡି
କେତେ ଖାଇ କେତେ ଫିଙ୍ଗି ଦିଏଟି,
ଉପବାସେ କିଏ ପେଟକୁ ନ ପାଏ
କିଏ ଖାଉଅଛି ପତର ଚାଟି ।।

ପାଟମଠା ଧୋତି କିଏ ପିନ୍ଧୁ ଥା'ନ୍ତି
ଜୋତା ମୋଜାରେ କା ଲୁଚେ ଗୋଇଠି,
କିଏ ବା ବିବସ୍ତ୍ର କିଏ ଚିରାବସ୍ତ୍ର
କେ ପିନ୍ଧେ ପକାଇ ସତର ଗଣ୍ଠି ।।

ତୂଳୀ ପୁଷ୍ପ ଶଯ୍ୟା କେ କରଇ ମଜା
ଶୋଇ ଶୋଇ ଦିନ ଯାଉଛି ବିତି,
ଆଉ ଜଣେ କିଏ କତରା ନ ପାଏ
ତା' ଦିନ ଯାଉଛି ଧୂଳିରେ ଲୋଟି ।।





Digitized by PPRACHIN, SOA

କାହା ଘରେ ଜନ ବହୁତ ସନ୍ତାନ
ନାତି ଦେଖି ଅଣନାତି ଦେଖେଚି,
ଆଣ୍ଠୁକୁଡ଼ା ଘରେ ପୁଅ ଜନ୍ମ ହେଲେ
ଅନ୍ତୁଡି ଶାଳରୁ ଚିପୁଛ ଚୋଟି ।।

କହଇ ବାକର ମୁଁ ପାପୀ ପାମର
ପୁଅ ଗୋଟେ ଦେଲ ଝିଅ ପାଞ୍ଚଟି,
ତାଙ୍କ ପାଇଁ ଖାଦ୍ୟ ନ କଲ ବରାଦ
(ମୋତେ) ମୋହମାୟା ଭବେ ମାରୁଛ ଘାଣ୍ଟି,
ବଡ ଦିଅଁ ହେ — ।।



---

କଟକ ଜିଲ୍ଲାର ଟାଙ୍ଗି ଚୌଦ୍ୱାର ପଞ୍ଚାୟତ ସମିତ ଅନ୍ତର୍ଗତ ତାଳିଯୋଡା ବ୍ରହ୍ମପୁର ଗ୍ରାମରେ ଓଡିଆ ଭଜନ ରଚନାର ଦ୍ୱିତୀୟ ସାଲବେଗ ସେକ୍ ବାକର୍ ମହମ୍ମଦଙ୍କ ଜନ୍ମ । ସେ ମାଆ ସାରଳାଙ୍କ କୃପାରୁ କୋଷ ବ୍ୟାଧିରୁ ମୁକ୍ତ ହେବା ପରେ ଓଡିଆ ଭଜନ, ଚଉପଦୀ ରଚନାରେ ମନ ବଳାଇଲେ । ସେ ଛୋଟ ଛୋଟ ଭଜନ ପୁସ୍ତିକା ମାନ ରଚନା କରି କୁଟୁମ୍ବ ପୋଷୁଥିଲେ । ସେ ସହସ୍ରାଧିକ ଭଜନ ଚଉପଦୀର ପ୍ରଣେତା ଭାବେ ପରିଚିତ । ୧୯୭୮ ଜୁଲାଇ ୧୪ ତାରିଖ ଦିନ ସେ ଇହଧାମ ତ୍ୟାଗ କରିଛନ୍ତି ।



Digitized by PPRACHIN, SOA

# ୮୨

## କାହା ଆଗେ କହିବି

କାହା ଆଗେ କହିବି ମୁଁ ସାକ୍ଷୀ, ହେ ଚକା ଆଖି  ।ଘୋଷା ।
ଡାକିଲେ ନାମ ଆରତେ ନଶୁଣ କିମ୍ପା ତ୍ୱରିତେ
କି ବିଚାର ହୃଦଗତେ ନ ଡେର ଶ୍ରବଣ ପଥେ
ଜପି ନାମ କଣ୍ଠ ଗଲା ଶୁଖି ହେ  ।୧ ।

ମୋ ଦୋଷ ଘଟ ମାତର ତୁମ୍ଭ କୃପା ଅକୂପାର
ରଖିଛ ଗଙ୍ଗା ପାଦର ତୃଷା ନ ହରଇ ମୋର
ହେଉ ଅଛ ନିଷ୍ଠୁର କାହିଁକି ହେ  ।୨ ।

ନେବ ବୋଲି କିଛି ଲାଞ୍ଚ ମନେ କରି ଅଛ ପାଞ୍ଚ
ସେ କଥା ମନରୁ ମୁଞ୍ଚ ବଳି ଗଲା ମନ ସ୍ୱଚ୍ଛ
ଗୋପପୁରେ ପୟସର ଚାଖିହେ  ।୩ ।

ପାଇ ନାନା ଉପବନ ହୋଇଲ ହରଷ ମନ
ଆଳସେ କି ଅପଘନ ଘାରିଲା ନିଦ୍ରା ନୟନ
ନ ଶୁଣୁଛ ସେ କାରଣୁ ନିକି ହେ  ।୪ ।

କହଇ ସାନନ୍ଦ ଦ୍ୱିଜ ଆହେ ପ୍ରଭୁ ଚତୁର୍ଭୁଜ
ଗଲାଣି କି ପୂର୍ବ ତେଜ ଦୁଃଖୀ ଦୁଃଖ ଯା ନବୁଝ
ହୋଇବାରୁ ନୀଳାଚଳେ ସୁଖୀ ହେ  ।୫ ।

---

ସାନନ୍ଦଦ୍ୱିଜ ଚଳିତ ଶତକର ଜଣେ ଭକ୍ତ କବି । ତାଙ୍କ ରଚିତ ଭଜନ ଗୁଡିକ ମର୍ମସ୍ପର୍ଶୀ ହୋଇ ପାରିଛି । ଅକୂପାର - ସମୁଦ୍ର, ଗଙ୍ଗାପାଦର - ବିଷ୍ଣୁଙ୍କ ପାଦ ନଖ କୋଣରେ ଗଙ୍ଗା ପ୍ରବାହିତ ହେଉଥିଲେ । ଭଗୀରଥଙ୍କ ତପସ୍ୟାରୁ ଗଙ୍ଗା ମର୍ତ୍ତ୍ୟକୁ ଆସିଲେ ବୋଲି ପୌରାଣିକ ମତ ରହିଛି ।

ମୁଞ୍ଚ - ତ୍ୟାଗ କର, ପଞ୍ଚ - ବିଚାର, ପୟସର - କ୍ଷୀର ଓ ସର, ଗୋପପୁରରେ ବିଷ୍ଣୁ ଶ୍ରୀକୃଷ୍ଣ ରୂପେ ଆବିର୍ଭୂତ ହୋଇ ଗୋପୀମାନଙ୍କ ଘରେ ପଶି କ୍ଷୀର, ସର, ଲବଣି ଖାଉଥିଲେ ।



Digitized by PPRACHIN, SOA

# ୮୩

## ଜଗବନ୍ଧୁ କୃପାସିନ୍ଧୁ



ଜଗବନ୍ଧୁ କୃପାସିନ୍ଧୁ ଆହେ ଜଗାକାଳିଆ ।
ବଡ଼ କ୍ରୁର ଅବିଶ୍ୱାସୀ ବଡ଼ ତୁମେ ଜାଲିଆ ।।

ବଡ଼ଦେଉଳେ ଗୋସାଇଁ, ବଡ଼ଦିଅଁ ନାମ ବହି,
ବଡ଼ତି କରିଛ କା'ର କହ ଚକାଆଖିଆ ।
ପତିତପାବନ ବାନା, ମିଛେ ଉଡାଇଛ ସିନା,
ହଟିଆ ଠାକୁର ତୁମେ ବଡ଼ ନଟକୁଟିଆ ।।

ଦୁଃଖନାଶନ ବୋଲାଇ, ଦୁଃଖନାଶ କଲ ନାହିଁ
ମନ୍ଦ-ଦଇବ-ଛନ୍ଦୁଆ, ଗୋବର୍ଦ୍ଧନ ଟାଳିଆ ।
ଆଖିଛୁଇଁ କହ ସତ ଆହେ ପ୍ରଭୁ ଜଗନ୍ନାଥ,
ଗୁହାରି ନ ଶୁଣିବାକୁ, କହିଛି କି ବଳିଆ ।।

---

ନାରୀକବି ଶ୍ରୀମତୀ ତୁଳସୀ ଦାସ ପୂର୍ବତନ କଟକ ଜିଲ୍ଲାର କୁଜଙ୍ଗର ଅଧିକାରୀ ସାହିରେ, ୧୯୩୯ ମସିହାରେ ଜନ୍ମ ଗ୍ରହଣ କରି ବହୁ କବିତା ଓ ଭଣାଣ ଆଦି ରଚନା କରିଛନ୍ତି । ତାଙ୍କ ରଚନା ଗୁଡିକ ଅତ୍ୟନ୍ତ ସରଳ ଓ ହୃଦୟସ୍ପର୍ଶୀ ।



Digitized by PPRACHIN, SOA



# ୮୪

## ଦେଖୁଛି ତୁମକୁ ନିରେଖି

ଦେଖୁଛି ତୁମକୁ ନିରେଖି ଏତେ ମୁଁ  ମନ ବୋଧ ହେଉ ନାହିଁ ।
ମନେ ହୁଏ ଯେହ୍ନେ ଟଙ୍କାତୋଳା ତୁମେ ମୋତେ ବି ରହିଛ ଚାହିଁ  ।୧ ।

ନୀଳାଚଳେ ଘର ତଥାପି ଲଲାଟଲେଖନ ଏପରି ମୋର,
ପ୍ରବାସରେ ଚାହିଁ ନିତ୍ୟ ଦରଶନ ଆଶା ନ ହୁଏ ସଫଳ ।୨ ।

ଦିନ ଯେତେ ଯାଏ ତୁମ ପରିଚୟ କ୍ରମେ ନିତି ଅଭିନବ,
ଅପୂର୍ଣ୍ଣ ଆକାରେ ପୂର୍ଣ୍ଣ ଏତେ ତୁମେ ଅପୂର୍ବ ମୋ ଅନୁଭବ ।୩ ।

ବ୍ରାହ୍ମ ମୂହୂର୍ତ୍ତରୁ ଅଧରାତି ଯାଏ ତୁମଲାଗି ସେବା ଯେତେ,
ଅଭିଳାଷ ବଡ଼ ନିଜ ଘିତି ଗୁଛି ରଖନ୍ତି ସେ ସବୁ ସାଥେ ।୪ ।

କେତେବେଳେ ଆଖି ଆଢୁଆଳ ପ୍ରଭୁ ନକରନ୍ତି ପଦ୍ମମୁଖ,
କଳା ନୟନକୁ ଚାହିଁ ରହିଥିଲେ, ତାଠାରୁ ବଳିକି ସୁଖ ।୫ ।

ନିକଟକୁ କେବେ ଲେଉଟାଇ ନେବ କୁହ କୁହ ପ୍ରାଣ ସାଇଁ
ନିଜର ବୋଇଲେ ତୁମେ ସାଥୀ ଏକା ଆନ ଭରସା ମୋ କାହିଁ ।୬ ।



Digitized by PPRACHIN, SOA

## ଆହେ ନୀଳପରବତ ବିହାରୀ

ଆହେ ନୀଳ ପରବତ ବିହାରୀ
କେତେ କାଳ ଆଉ ତୁମ ଶ୍ରୀପୟରେ
କରୁଥିବି ନିତି ନିତି ଗୁହାରୀ ।୦।

ଦଦରା ମୋ ହେଲାଣି ନାଆ
ବହିଲାଣି ବତାସୀ ବାଆ
ଥଳକୂଳହୀନ ଦୁଃଖ ପାରାବାର
ଚଉଦିଗେ ମହାକାଳ ଭଉଁରୀ ।୧।

ଦିନମଣି ପଶ୍ଚିମ କୂଳେ
ବୁଡ଼ି ଯିବେ ଯେ କେଉଁ କାଳେ
ଘୋର ଅମାରାତି ଆସି ଘୋଟି ଯିବ
ଭାନୁର ଭରସା ତୁଟିବ ହରି ।୨।

ନ ଶୁଣିଲେ ମୋର ଗୁହାରୀ
ହେବି ମୁଁ କି ଆଉ କାହାରି ?
ତମ ଲୋକ ଯିବ ନାଶ ଏ ଜଗତେ
ଅକୀର୍ତ୍ତି ହୋଇବ ସିନା ତୁମରି
କେତେ ପ୍ରାଣୀ ଯାଆନ୍ତି ନାଶ
ମୋହରି ବା ହୋଇବ ନାଶ
ମୋ ପାଇଁ ମୋହର ଦୁଃଖ ନାହିଁ ଲବେ
ତୁମ ନିନ୍ଦା ସିନା ପକାଏ ଘାରି ।୩।

Digitized by PPRACHIN, SOA

## କାଳିଆ ଫେରି ଯିବ କାଲି ହୋ · · ·

କାଳିଆ ଫେରି ଯିବ କାଲି ହୋ .......
ଶୁନିଥ ଆମର୍ ଗୁହାରି
ଭାଏ ବହେନ୍ ତିହ୍ନେ କରି ।
କାଳିଆ କାଳିଆ ନାଁ ପଡୁଛେ ........
ମାଉସୀଘରେ ହଁସି ଦେଉଛେ,
ରଥଥି ଯିବ ବସି କରି ।।
ନନ୍ଦିଘୋଷ ରଥ ଝଲ୍‌ମଲ୍ ଦିଶେ ବସିଯିବ ହଲିଝୁଲି,
ତୁମର୍ ଆଗେ ଆଗେ ସୁହଦରା ବହେନ୍ ଚାଲୁଥିବେ ମଝା ଖୁଲି ।
ତାଲଧ୍ୱଜେ ବଡଖା ଭାଇ ଗୁଡ଼ିକେ ନେବେ କଢ଼େଇ,
ଶରଧା ବାଲିନୁ ଡାକ୍ ଦେଉଛୁଁ ଗୁହାରି କରୁଁ ହାତ ଯୁରି ।୧।
ବିପଦଭଞ୍ଜନ ଦୀନବନ୍ଧୁ ହରି ତୁମେତ ଭକତର ସଖା,
ଦୁଃଖେ ହେସ ଭାଗୀ ସୁଖେ ହେସ ଭାଗୀ ସବୁ ଜାନ୍‌ସ ମନର୍ କଥା ।
ତୁମର ଫିର୍‌ଲା ବେଲ୍‌କେ ଟିକେ ନଜର୍ ପକାଇ ଦେବମତେ,
ବଟଗଛତଲୁଁ ଡାକ୍ ଦେଉଁଛୁଁ ଉଦ୍ଧରି ରଖିଥ ମୁରାରି ।୨।
ବଡ଼ଦେଉଳଥି ବସି ଦେଖୁଥିସ୍
ଜଗତରନାଥ୍ ଜଗନ୍ନାଥ ।
ଆଠ ଦିନର୍ ଲାଗି ଆସିଛ କୁନୁଆ ହୋ
ଖାଏବାକେ ମାଉଁସୀ ଘରେ ଭାତ୍ ।
ଉଡୁଛେ ନୀଲଚକ୍ର ବାନା ........
ମତେ ନାଇଁ କର୍‌ବ ଦୁଃଖ ମନା
ମୁହାଁ ମୁହିଁ କରି ଖୋଲି କହୁଛୁ .......
ଶରନ୍ ଦିଅ ପାଦତଲେ ।୩।

---

ସମ୍ବଲପୁର ଜିଲ୍ଲାର ବରଗାଁ ଗ୍ରାମରେ ୨୦·୯·୧୯୧୯ ରେ କବି ଶ୍ରୀ ପ୍ରଭାକର ପାଣିଗ୍ରାହୀ ପିତା ରାମଚନ୍ଦ୍ର ପାଣିଗ୍ରାହୀ ଓ ମାତା ଲୀଳାବତୀ ଦେବୀଙ୍କର କୋଳମଣ୍ଡନ କରି ଜନ୍ମଗ୍ରହଣ କରିଥିଲେ । ତାଙ୍କ ରଚନାବଳୀ ମଧ୍ୟରେ ଗୀତାମୃତ, ଭଜନ ପ୍ରଭାକର, ଭକ୍ତି ରସାବଳୀ ଓ ନୃସିଂହନାଥ ପ୍ରଭୃତି ପାଠକ ସମାଜରେ ଆଦୃତ ହୋଇଛି । କବି ଶ୍ରୀ ପାଣିଗ୍ରାହୀ ସରକାରୀ ଚାକିରୀରୁ ଅବସର ଗ୍ରହଣ କରି, ବର୍ତ୍ତମାନ ସମ୍ବଲପୁର ସହରର ନନ୍ଦାପାଲି ଗ୍ରାମରେ ବାସ କରୁଛନ୍ତି ।



Digitized by PPRACHIN, SOA

## ୮୭

### ବଡ଼ ଦେଉଳୁ ବଡ଼ଖା ରଥେ



ବଡ଼ଦେଉଳୁ ବଡ଼ଖା ରଥେ
ମଝାଖୁଲି ଠିଆ ।
କଲାଦେହ ଧରି କଲାବଦନ
ନାଁ ତୋର୍ କାଲିଆ ।।

ତୁଇ ଦୁଃଖୀଜନକର୍ ଦୁଃଖ ହରସୁ ।
ତୁଇ ସୁଖୀଜନକର୍ ସୁଖ ବଢ଼ାସୁ ।
ସେ ଭିତରେ ମତେ ମିଶାବୁ,
ମାରୁଛେଁ ମୁଣ୍ଡିଆ ।।

ଜଗାକାଲିଆ ମୋର୍ ଜଗାକାଲିଆ,
ତୁଇତ ମୋର୍ ଗଲାମାଲୀ ଧନମାଲିଆ ।
ନନ୍ଦିଘୋଷ୍ ରଥେ ବସି ଦେଖୁ ହସିହସି
ତୁଇତ ଖୁସି ମୁଇଁତ ଖୁସି ଜଗତ୍‌ଯାକର୍ ଖୁସି ।।
ଭକ୍ତବନ୍ଧୁ କୁର୍‌ପାସିନ୍ଧୁ ରଖ୍ ତୁମର୍ ତଲିଆ ।।

ତୁମେ ମୋର ଭାଇ ଦାଇ ତୁମେ ମୋର୍ ବନ୍ଧୁ ।
ହିଂସା ଅହଙ୍କାର୍ ମୋର ଦିହର୍ ଝାରିଦିଅ ଅନ୍ଧୁ ।
କରୁଥିମି ତୁମର ସେବା
ନାଇଁ ରଖ୍ ଧୁରିଆ ।।

ଘିଚୁଥିମି ରଥ ରସି ବରଷକେ ଥରେ ଆ. ।
ଘିଚିନେମି ମାଉସୀ ଘର୍‌କେ ରଥେ ଥିବ ବସି ।
ଜଗତ୍‌ନାଥ ନାଥ୍ ମୋର
ଦିହଁ ଭିତରେ ରଚିଆ ।।



Digitized by PPRACHIN, SOA